# ଅଧିକାର ଓ ପ୍ରବଞ୍ଚନା

ଓଡ଼ିଶାର ଖଣି ବିରୋଧି ଆନ୍ଦୋଳନ, ଏନ୍‌କାଉଣ୍ଟର, ହତ୍ୟା, ବିସ୍ଥାପନ ଓ ପ୍ରଦୂଷଣ, ଦଳିତଙ୍କ ଉପରେ ଅତ୍ୟାଚାର ଓ ଦାଦନ ସଂପର୍କିତ ତଥ୍ୟାନୁସନ୍ଧାନ ମୂଳକ ରିପୋର୍ଟ

ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ

ଓଡ଼ିଶା

# ଅଧିକାର ଓ ପ୍ରବଞ୍ଚନା

ପ୍ରକାଶକ : ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ
ଓଡ଼ିଶା

ମୁଦ୍ରକ : ସଭାପତି, ଗଣତାନ୍ତ୍ରିକ ଅଧିକାର ସୁରକ୍ଷା, ସଂଗଠନ
ଓଡ଼ିଶା

ମୂଲ୍ୟ : ୩୦ ଟଙ୍କା

ପ୍ରକାଶନ ସମୟ : ସେପ୍ଟେମ୍ବର, ୨୦୧୪

# ମୁଖବନ୍ଧ

ମାନବିକ ଓ ଗଣତାନ୍ତ୍ରିକ ଅଧିକାର ଏକ ବିତର୍କିତ ଭାବନା । ଆଜିବି ସେ ବିତର୍କ ଅବ୍ୟାହତ । କିନ୍ତୁ ସବୁଠାରୁ ସୁଖଦ ଘଟଣା ହେଲା ବର୍ତ୍ତମାନ ପୃଥିବୀର ଅଧିକରୁ ଅଧିକ ବ୍ୟକ୍ତି ଏଥିରେ ଅଂଶ ଗ୍ରହଣ କରୁଛନ୍ତି । ଅଂଶ ଗ୍ରହଣ କରୁଛନ୍ତି ଏହି ବିତର୍କରେ- ଅଂଶଗ୍ରହଣ କରୁଛନ୍ତି ଏହି ଆନ୍ଦୋଳନରେ । ଯେଉଁମାନେ ନୀରବ ଦର୍ଶକର ଭୂମିକାରେ ଥିଲେ ସେମାନେ ବି ଏହି ଆନ୍ଦୋଳନରେ ସାମିଲ୍ ହେଉଛନ୍ତି । ଏ ପ୍ରସଙ୍ଗରେ କହିବାକୁ ହେବ ଯେ ମାନବିକ ଅଧିକାର ନା ଗୋଟିଏ ବିମୂର୍ତ୍ତ ଧାରଣା ନା ଗୋଟିଏ ବିଶୁଦ୍ଧ ଚିନ୍ତା । ଏ ଚିନ୍ତାଧାରାର ପରିବର୍ତ୍ତନ ମଣିଷର ସମାଜ, ଓ ଅର୍ଥନୈତିକ ବିକାଶରେ ଆବର୍ତ୍ତିତ ହୁଏ । ଖାଲି ସେତିକି ନୁହେଁ, ଏହା ଦେଶ, କାଳ,ପାତ୍ର ଉପରେ ନିର୍ଭରଶୀଳ । ଏହି ପ୍ରସଙ୍ଗରେ ଆହୁରି ଉଲ୍ଲେଖନୀୟ ଯେ କେହି ସ୍ୱୀକାର କରନ୍ତୁ ବା ନ କରନ୍ତୁ ଏହା ଶ୍ରେଣୀ-ଭିତ୍ତିକ । ଆଇନ୍ ଦୃଷ୍ଟିରେ ସବୁ ମଣିଷ ସମାନ ଏହା ନିଛକ ପୁସ୍ତକୀୟ ଭାଷା । ଏହା ଆମ ଦେଶ ପାଇଁ ଯେପରି ପ୍ରଯୁଜ୍ୟ ସାରା ବିଶ୍ୱ ପାଇଁ ବି ସେହିପରି ପ୍ରଯୁଜ୍ୟ । ସ୍ୱଭାବତଃ ଏହା ଏକ ଅନିବାର୍ଯ୍ୟ ଓ ସିଦ୍ଧାନ୍ତ ଯେ ମାନବିକ ଗଣତାନ୍ତ୍ରିକ କାର୍ଯ୍ୟକଳାପ ଓ ଲଢ଼େଇ ଶ୍ରେଣୀ ନିର୍ଭରଶୀଳ ।

ୟୁରୋପରେ ଶିଳ୍ପବିପ୍ଳବ ଓ ଧନତନ୍ତ୍ରର ବିକାଶର ସଂଗେ ସଂଗେ ମାନବିକ ଅଧିକାର ଚିନ୍ତାଭାବନାର ବିକାଶ ଘଟିବାକୁ ଆରମ୍ଭ କରିଥିଲା । ରାଜତନ୍ତ୍ର ସାମନ୍ତତନ୍ତ୍ରର ବିରୁଦ୍ଧରେ ମଣିଷର ପ୍ରାଥମିକ ବିକାଶ ଏକ ସଂସ୍କାରବାଦୀ ଆନ୍ଦୋଳନ ଭିତରେ ଘଟିଥିଲା । ଯାହା ପଞ୍ଚଦଶ-ଷୋଡଶ ଶତାବ୍ଦୀରେ ୟୁରୋପରେ 'ରେନେସା' ନାମରେ ପରିଚିତ । ଏହି 'ରେନେସା' ହିଁ ଶୁଣାଇଥିଲା ବ୍ୟକ୍ତି ସ୍ୱାଧୀନତାର ପ୍ରଥମ ଆହ୍ୱାନ । ଅବ୍ୟବହିତ ପରେ ଫରାସୀ ବିପ୍ଳବ ଏହାକୁ ଏକ ସାମଗ୍ରିକ ରୂପ ଦେଇଥିଲା । ଫରାସୀ ବିପ୍ଳବ ହିଁ ବିଶ୍ୱବାସୀଙ୍କୁ ସାମ୍ୟ, ଶାନ୍ତି ଓ ମୈତ୍ରୀର ଆହ୍ୱାନ ଦେଇଥିଲା । ତତ୍‌ପରବର୍ତ୍ତୀ ପର୍ଯ୍ୟାୟରେ ଋଷ ବିପ୍ଳବ ଏ ଧାରଣାକୁ ଆହୁରି ପରିମାର୍ଜିତ ଓ ସୁସଂଘବଦ୍ଧ ରୂପଦିଏ ।

ମାନବ ସଭ୍ୟତା ଇତିହାସରେ ପ୍ରଥମ କରି ଏକ ରାଷ୍ଟ୍ରଶକ୍ତି ଏହାକୁ ମାନ୍ୟତା ଦିଏ ଏବଂ ଘୋଷଣା କରେ ପ୍ରତିଟି ମଣିଷର ସାର୍ବଭୌମତ୍ୱ ଓ ସମାନତା ! ପ୍ରତିଟି ଜାତିସତ୍ତାର ଆତ୍ମ ନିୟନ୍ତ୍ରଣ କ୍ଷମତା, ପ୍ରତିଟି ଧର୍ମ, ବର୍ଣ୍ଣର ସମାନ ଅଧିକାର ଏବଂ ସଂଖ୍ୟା ଲଘୁ ସଂପ୍ରଦାୟର ସାମୁହିକ ବିକାଶର ଅଧିକାର ।

ଦୁଇ ବିଧ୍ୱଂସୀ ବିଶ୍ୱଯୁଦ୍ଧ ପରେ ସମଗ୍ର ବିଶ୍ୱରେ ସାମ୍ରାଜ୍ୟବାଦ, ଉପନିବେଶବାଦ ଓ ଫାଶୀବାଦ ବିରୁଦ୍ଧରେ ଏକ ଗଣ ଜାଗରଣ ଦେଖାଯାଏ । ଦେଶ ଦେଶରେ ମୁକ୍ତିର ଉଚ୍ଛ୍ୱାସ ବହେ । ଯାହାର ଫଳ ଶ୍ରୁତିରେ ୧୯୪୫ ମସିହାରେ ଜାତିସଂଘ ମାନବାଧିକାର ସନନ୍ଦ ଘୋଷଣା କରେ । ଯଦିଓ ଅଂଶ ଗ୍ରହଣକାରୀ ଦେଶଙ୍କ ଭିତରେ ପ୍ରବଳ ମତ ପ୍ରାର୍ଥକ୍ୟ ସତ୍ତ୍ୱେ ତଥାପି ଏହାକୁ ଆପଣେଇ ନେଇଥିଲେ । ଦୀର୍ଘ ବିତର୍କ, ଆଳାପ ଆଲୋଚନା ପରେ ଜାତିସଂଘ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ସର୍ବସମ୍ମତି କ୍ରମେ ଗ୍ରହଣକରେ ଏବଂ ୧୯୭୮ ମସିହାରେ ଏହା କାର୍ଯ୍ୟକାରୀ ହୁଏ ।

ଭାରତ ବର୍ଷରେ ଗଣତାନ୍ତ୍ରିକ ସୁରକ୍ଷା ଆନ୍ଦୋଳନ କୌଣସି ନୂଆକଥା ନୁହେଁ । ତିରିଶ ଦଶକରେ ପ୍ରଥମ କରି ଜବାହାର ଲାଲ୍ ନେହେରୁ ଓ ସରୋଜିନୀ ନାଇଡୁଙ୍କ ନେତୃତ୍ୱରେ ଏହାର ପ୍ରଥମ ବହିଃ ପ୍ରକାଶ ଘଟେ । ସାରା ଦେଶରେ ଛୋଟବଡ଼ ପ୍ରାୟ ସତୁରୀଟିରୁ ଅଧିକ ସଂଗଠନ ରାଜ୍ୟ ଓ ସର୍ବଭାରତୀୟ ସ୍ତରରେ ଦାରିଦ୍ର୍ୟ ନିପିଡିତ ଜନଗଣର ସୁଖଦୁଃଖ, ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ଜାରି ରଖିଥିଲେ । ବିଭିନ୍ନ ସଂଗଠନର ଗଣ ଆନ୍ଦୋଳନ ଏବଂ ଏହା ବିରୁଦ୍ଧରେ ରାଷ୍ଟ୍ରର ଦମନଲୀଳାର ପ୍ରତିବାଦରେ ଗଣତାନ୍ତ୍ରିକ ଅଧିକାର ଆନ୍ଦୋଳନର ଧାରା ଅବ୍ୟାହତ ରହିଛି । ଏହା ମାନିବାକୁ ପଡ଼ିବ ଯେ ଏହି ସଂଗଠନ ମାନେ ବ୍ୟାପକ ଶ୍ରମିକ ଶ୍ରେଣୀ, ଦଳିତ ସଂଗଠନ, ନାରୀ ସଂଗଠନ ଓ ଗଣତନ୍ତ୍ର ପ୍ରେମୀ ଜନଗଣଙ୍କ ସହ ଏକତ୍ରିତ ହୋଇପାରି ନାହାନ୍ତି । ଏଇଥିପାଇଁ ଏ ଆନ୍ଦୋଳନକୁ ଆହୁରି ବ୍ୟାପକ କରିବାର ଆବଶ୍ୟକତା ରହିଛି । ଏହି ପ୍ରସଙ୍ଗରେ କହିବା ବାହୁଲ୍ୟ ଯେ ଆମ ଦେଶର ଗଣତାନ୍ତ୍ରିକ ଓ ନାଗରିକ ଆନ୍ଦୋଳନର ତିନୋଟି ମୁଖ୍ୟଧାରା ଜଣାପଡେ । ପ୍ରଥମତଃ ମାନବିକ ଅଧିକାର- ଏହି ଧାରଣା ଅନୁଯାୟୀ ସମସ୍ତ ମଣିଷ ସମାନ । ସେମାନଙ୍କ ମତରେ ଜାତିସଂଘର ସନନ୍ଦକୁ ଭିତ୍ତିକରି

କାମ କରିବା ଦରକାର । ପୂର୍ବେ କୁହାଯାଇଛି ଏହା ଏକ ଭ୍ରମାତ୍ମକ ଦୃଷ୍ଟିଭଙ୍ଗୀ । ଦ୍ୱିତୀୟତଃ ନାଗରିକ ସ୍ୱାଧୀନତା- ଏମାନେ ଦେଶର ସଂବିଧାନ ଓ ଆଇନ୍ ମଧ୍ୟରେ ହିଁ ନିଜର ଆନ୍ଦୋଳନକୁ ସୀମାବଦ୍ଧ ରଖନ୍ତି । ସର୍ବଶେଷରେ ଗଣତାନ୍ତ୍ରିକ ଅଧିକାର- ଏହି ଧାରଣା ଅନୁସାରେ ଉପର ଲିଖିତ ଦୁଇ ଧାରଣା ବାହାରେ ବି ମଣିଷ ଓ ସମାଜର ବିଭିନ୍ନ ପ୍ରକାର ସମସ୍ୟା ରହିଛି । ତା' ବିରୁଦ୍ଧରେ ନିଜ ଆନ୍ଦୋଳନର ଅଧିକାରକୁ ସମର୍ଥନ କରେ । ଯେମିତିକି ସମାଜ ବିପ୍ଳବ ଏକ ରାଜନୈତିକ ଅଧିକାର । ଯାହାକୁ ନା ଜାତିସଂଘ ସମର୍ଥନ କରେ ନା କୌଣସି ଦେଶର ସଂବିଧାନ ସମର୍ଥନ କରେ ।

୧୯୬୭ ମସିହାର ନକ୍ସଲ୍ ବାଡି କୃଷକ ଆନ୍ଦୋଳନ ଓ ତତ୍ପରବର୍ତ୍ତୀ ଘଟଣା ପ୍ରବାହ ଏବଂ ୧୯୭୫ ମସିହାର ଦେଶବ୍ୟାପି ଆପତ୍କାଳୀନ ଅବସ୍ଥାର ଘୋଷଣା ଓ ତତ୍ପରବର୍ତ୍ତୀ ରାଜନୈତିକ ଘଟଣାବଳୀ ଭାରତବର୍ଷର ମାନବିକ ଓ ଗଣତାନ୍ତ୍ରିକ ଆନ୍ଦୋଳନକୁ ଏକ ନୂତନ ଦିଶା ଦିଏ । ଏହି ପ୍ରେକ୍ଷାପଟରେ ନାନା ବିତର୍କ ମଧ୍ୟଦେଇ ୧୯୮୩ ମସିହାରେ 'ଓଡ଼ିଶା ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ'ର ଯାତ୍ରା ଆରମ୍ଭ ହୁଏ । ଏହା ଗଠିତ ହେବା ପରେ ପରେ ଏହି ସଂଗଠନ ସମ୍ମିଳିତ ଭାବେ ଆଉ ଗୋଟିଏ ସର୍ବ ଭାରତୀୟ ସାମ୍ମୁଖ୍ୟ (AIFOFDR) ର ଜନ୍ମ ଦିଏ । ତିନି ଦଶନ୍ଧି ବିତିଗଲାଣି । ନାନା ଉତ୍ଥାନ ପତନ, ଆନ୍ଦୋଳନ, ସଂଘର୍ଷ ମଧ୍ୟ ଦେଇ ଏହି ସଂଗଠନ ଆଜି ପହଞ୍ଚିଛି । ବିଗତ ଦିନରେ ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଚାଲିଥିବା ମଣିଷର ନାନା ଗଣ ଆନ୍ଦୋଳନ, ଅସ୍ତିତ୍ୱରକ୍ଷାର ଆନ୍ଦୋଳନ, ଜୀବନର ନ୍ୟୁନତମ ଅଧିକାରର ବାସ୍ତବ ରୂପଦେବାପାଇଁ ଆନ୍ଦୋଳନ ଓ ମଣିଷର ପ୍ରାଥମିକ ନ୍ୟୁନତମ ଅଧିକାର ହିସାବରେ ଖାଦ୍ୟ, ବାସସ୍ଥାନ, ଶିକ୍ଷା, ଚିକିତ୍ସା ଓ ଜୀବିକା ଅଧିକାରକୁ ବାସ୍ତବାୟିତ କରିବାରେ ସାଥୀ ହିସାବରେ ସାମିଲ୍ ହୋଇଆସୁଛି । ଏହି ପ୍ରସଙ୍ଗରେ ସଂଗଠନର କେତୋଟି ଉଲ୍ଲେଖଯୋଗ୍ୟ କାର୍ଯ୍ୟକଳାପ ବର୍ଣ୍ଣନାଯୋଗ୍ୟ । ତନ୍ମଧ୍ୟରେ ୧୯୮୫-୮୬ରେ ଜି. ଉଦୟଗିରିର ଆଦିବାସୀ ମାନଙ୍କର ନିଶାବିରୋଧି ଆନ୍ଦୋଳନ, ୨-ଜି.ଉଦୟଗିରିର ଆଦିବାସୀଙ୍କ ଉପରେ ପୁଲିସର ଦମନ ଲୀଳା, ୩-ଫୁଲବାଣୀ ଜିଲ୍ଲାର ଆଦିବାସୀ ମହିଳାଙ୍କ ସମସ୍ୟା ଓ ତତ୍‌ଉଦ୍ଭୁତ ପରିସ୍ଥିତି, ୪- ଭଦ୍ରଖ ସାଂପ୍ରଦାୟିକ

ଦଙ୍ଗା, ୫- ବାଲ୍‌କୋ (BALCO) ବିରୋଧି ଆନ୍ଦୋଳନ, ୬- ଗନ୍ଧମାର୍ଦ୍ଦନ ଆନ୍ଦୋଳନ, ୭-ବୃହତ୍ ଜଳପ୍ରକଳ୍ପ, ବିକାଶ ନା ବିନାଶ, ୮- ବାଲିଆପାଳ କ୍ଷେପଣାସ୍ତ୍ର ଘାଟି ବିରୋଧି ଆନ୍ଦୋଳନ, ୯-ଓଡ଼ିଶା ଦାଦନ ଶ୍ରମିକ ସମସ୍ୟା, ୧୦- ଓଡ଼ିଶା ଅସଂଗଠିତ ଶ୍ରମିକ ସମସ୍ୟା, ୧୧- ମାଲ୍‌କାନ୍‌ଗିରି ଆଦିବାସୀଙ୍କର ଜଙ୍ଗଲ ଅଧିକାର ଆନ୍ଦୋଳନ ଓ ହାମ୍‌କୋ ବିରୋଧି ଆନ୍ଦୋଳନ ଉଲ୍ଲେଖଯୋଗ୍ୟ । ଏତଦ୍ ବ୍ୟତୀତ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ, ଓଡ଼ିଶା ସର୍ବଭାରତୀୟ ସଂଗଠନର ଅଂଶୀଦାର ଭାବରେ ସାରା ଦେଶରେ ବିଭିନ୍ନ ସମୟରେ ବେଶ୍ କେତୋଟି ସମୟରେ ବେଶ୍ କେତୋଟି ସମସ୍ୟା ନେଇକି ଅନୁସନ୍ଧାନ ଓ ସମୀକ୍ଷାରେ ଭାଗ ନେଇଥିଲା । ଏହା ମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ (କ) କାଶ୍ମୀର - ଏକ ଅଘୋଷିତ ଯୁଦ୍ଧ (ଖ) ୧୯୯୩ର ବମ୍ବେ ଦଙ୍ଗା (ଗ) ଅନନ୍ତପୁର ମିଛ ଗୁଳିକାଣ୍ଡ ଏବଂ (ଘ) ଦେଶବ୍ୟାପୀ ଖ୍ରୀଷ୍ଟିୟାନ ବିରୋଧି ହିଂସା ।

ନାନା ଉତ୍‌ଥାନ ପତନ ମଧ ଦେଇ "ଓଡ଼ିଶା ଗଣତାନ୍ତ୍ରିକ ଅଧିକାର ସୁରକ୍ଷା" ସଂଗଠନ ଆଜି ଏକ ଜଟିଳ ପରିସ୍ଥିତି ମଧ୍ୟରେ ତାର ସାଧାରଣ ସମ୍ମେଳନ କରିବାକୁ ଯାଉଛି । ଯାହା ଏ ଆନ୍ଦୋଳନ ଓ ସଂଗଠନକୁ ଏକ ନୂଆ ଦିଶା ଦେବ । ଏହି ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ରାଷ୍ଟ୍ର କ୍ଷମତାର କେନ୍ଦ୍ରିକତା ଯେତେ ବଢ଼ି ବଢ଼ି ଚାଲିଛି, ଅଧିକାର ଆନ୍ଦୋଳନର କର୍ମିଙ୍କ ମଧ୍ୟରେ ରାଜନୈତିକ ଆଗ୍ରହ ଓ ଯୋଗଦାନ କମିକମି ଚାଲିଛି ।

ଆଜିର ମାନବିକ ଓ ଗଣତାନ୍ତ୍ରିକ ଅଧିକାରର କର୍ମୀମାନଙ୍କୁ ଏଇ ବିଷୟରେ ସତର୍କ ରହିବାକୁ ପଡିବ । ଏହାର ସୁଯୋଗ କ୍ଷମତାଲୋଭୀ ଓ ସ୍ୱାର୍ଥନ୍ୱେଷୀ ଗୋଷ୍ଠୀ ନେଉଛନ୍ତି । ଆଜିର ମାନବିକ ଓ ଗଣତାନ୍ତ୍ରିକ ଅଧିକାରର କର୍ମୀମାନଙ୍କୁ ଏଇ ବିଷୟରେ ସତର୍କ ରହିବାକୁ ପଡିବ ଏବଂ କର୍ମୀମାନଙ୍କୁ ଖୋଜିବାକୁ ପଡ଼ିବ ଓ ଚୂଡାନ୍ତ ସିଦ୍ଧାନ୍ତ ନେବାକୁ ପଡ଼ିବ ମାନବିକ ଓ ଗଣତାନ୍ତ୍ରିକ ଅଧିକାର କଣ ରାଜନୀତିର ଅଂଶୀଦାର ହେବ ?

୨୦୧୨ ମସିହାଠାରୁ ସଙ୍ଗଠନ ସକ୍ରିୟ ହୋଇ ଲୋୟର ଶୁକତେଲ ଜଳସେଚନ ଯୋଜନା ବିରୋଧି ଆନ୍ଦୋଳନ, ସିଲାକୋଟା (ମାଲ୍‌କାନଗିରି)

ଏନକାଉଣ୍ଟର, ଓ କୋରାପୁଟର ଲମତାପୁଟ ଗଙ୍ଗାଧର କିରସାନୀ ବିଏସ୍ ଏଫ ଦ୍ୱାରା ହତ୍ୟା ଘଟଣାର ତଥ୍ୟାନୁସନ୍ଧାନ ରିପୋର୍ଟ ପ୍ରକାଶ କରିଛି । ଏହା ସହିତ କାଶୀପୁର ଓ ଲାଞ୍ଜିଗଡର ବକ୍‌ସାଇଟ୍ ଖଣି ବିରୋଧି ଆନ୍ଦୋଳନର ତଥ୍ୟାନୁସନ୍ଧାନ ରିପୋର୍ଟ ପ୍ରକାଶିତ ହୋଇଛି ।

ଏହି ସଂକଳନରେ ଉପରୋକ୍ତ ରିପୋର୍ଟ ସହ ଦାମୋଦରପୁର (ଯାଜପୁର ଜିଲ୍ଲାର ସୁକିନ୍ଦା ବ୍ଲକ)ର ଦଳିତ ନିର୍ଯ୍ୟାତନା ଓ ବାଲେଶ୍ୱରର ବାଲଗୋପାଳପୁର ଶିଳ୍ପାଞ୍ଚଳର ବିସ୍ଥାପନା ଓ ପ୍ରଦୂଷଣ ସଂପର୍କିତ ତଥ୍ୟାନୁସନ୍ଧାନ ରିପୋର୍ଟ ସ୍ଥାନିତ ହୋଇଛି । PUCL ଓଡ଼ିଶା ତରଫରୁ ଶ୍ରମିକଙ୍କ ପାପୁଲିକଟା ଓ ଦାଦନ ସମସ୍ୟାର ତଥ୍ୟାନୁସନ୍ଧାନ ରିପୋର୍ଟକୁ ଏଥିରେ ପ୍ରକାଶ କରିବାକୁ ଅନୁମତି ଦେଇଥିବାରୁ ଆମେ ସେମାନଙ୍କୁ ଧନ୍ୟବାଦ ଜଣାଉଛି ।

ବର୍ତ୍ତମାନ ଜଗତୀକରଣ ଓ ସାଂପ୍ରଦାୟିକ ଶକ୍ତି ବିରୁଦ୍ଧରେ ମାନବିକ ଅଧିକାର ଉଲଘଂନ ଓ ରାଷ୍ଟ୍ରହିଂସା କ୍ଷେତ୍ରରେ ଉଭୟେ କେନ୍ଦ୍ର ଓ ରାଜ୍ୟ ସରକାର କେହି କାହାକୁ କମ ଥିଲା ଭଳି ଲାଗୁନାହିଁ । ଜନସାଧାରଣଙ୍କ ସମସ୍ୟାର ତଥ୍ୟାନୁସନ୍ଧାନ ଭିତ୍ତିକ ରିପୋର୍ଟ ଉପସ୍ଥାପନ ସହିତ ଲୋକଙ୍କ ସାମ୍ବିଧାନିକ ଅଧିକାର ସୁରକ୍ଷା ନିମନ୍ତେ ସାମୂହିକ ପଦକ୍ଷେପ ନେବାଭଳି ଏକ ଗୁରୁଦାୟିତ୍ୱ ଏବେ ମାନବିକ ଓ ଗଣତାନ୍ତ୍ରିକ ଅଧିକାର ଆନ୍ଦୋଳନରେ ସଂପୃକ୍ତ ସଂଗଠନ ଓ ବ୍ୟକ୍ତିବିଶେଷଙ୍କ ଉପରେ ପଡିଛି । ଏହାକୁ କାର୍ଯ୍ୟକାରୀ କରିବା ଆମ ସମସ୍ତଙ୍କର ଦାୟିତ୍ୱ ।

ଗଙ୍ଗାଧର ପାଣିଗ୍ରାହୀ
ସଭାପତି

# କୋରାପୁଟ ଓ ମାଲକାନାଗିରି ଜିଲ୍ଲାରେ ଏନକାଉଣ୍ଟର-ଏକ ଅନୁସନ୍ଧାନ

ଗଲା ନଭେମ୍ବର ୯ ଏବଂ ୧୦ ତାରିଖରେ (୨୦୧୩) ଏକ ପାଞ୍ଚଜଣିଆ ଅନୁସନ୍ଧାନକାରୀ ଦଳ ଦକ୍ଷିଣ ଓଡ଼ିଶାର କୋରାପୁଟ ଏବଂ ମାଲକାନାଗିରି ଜିଲ୍ଲାର ତିନୋଟି ଅଞ୍ଚଳ ଗସ୍ତ କରିଥିଲେ । ଯେଉଁଠି ମାଓବାଦୀ ଏବଂ ପୋଲିସ ମଧ୍ୟରେ ତଥାକଥିତ ଗୁଳି ବିନିମୟ ହୋଇଥିବା କଥା ବିଭିନ୍ନ ଗଣମାଧ୍ୟମରେ ସରକାରଙ୍କର ତରଫରୁ କୁହାଯାଇଥିଲା । ଏହି ତିନୋଟି ଏନକାଉଣ୍ଟରରେ ପନ୍ଦର ଜଣଙ୍କର ମୃତ୍ୟୁ ହୋଇଛି, ଓ ସେମାନେ ସମସ୍ତେ ମାଓବାଦୀ ଥିଲେ ବୋଲି ପୋଲିସ ତରଫରୁ ଦାବିକରିଛନ୍ତି । ଅନୁସନ୍ଧାନକାରୀ ଦଳ ସେହିଦୁଇ ଦିନ ମଧ୍ୟରେ 'ଏନ୍‌କାଉଣ୍ଟର' ହୋଇଥିବା ସ୍ଥାନ ଯଥା କୋରାପୁଟ ଜିଲ୍ଲା ଲମତାପୁଟ ବ୍ଲକର ଗୁନେଇପଡ଼ା ପଞ୍ଚାୟତରେ ଥିବା ଲିଟିପୁଟ ଗ୍ରାମ ଓ ବାଲେଲ ପଞ୍ଚାୟତର ତିଲିବା ଗ୍ରାମ ତଥା ମାଲକାନାଗିରି ଜିଲ୍ଲା ପଡିଆ ବ୍ଲକର ବାପନପଲ୍ଲୀ ପଞ୍ଚାୟତରେ ଥିବା ସିଲାକୋଟା ଅଞ୍ଚଳ ଯାଇଥିଲେ । ଏହିଁ ଗସ୍ତ ମଧ୍ୟରେ ଦଳ ମୃତ ପରିବାରର ସଦସ୍ୟ ସମେତ ସ୍ଥାନୀୟ ଗ୍ରାମବାସୀ ଓ ବିଭିନ୍ନ ବର୍ଗର ଲୋକଙ୍କୁ ଭେଟିଥିଲେ । ଅନୁସନ୍ଧାନକାରୀ ଦଳର ଏକ ରିପୋର୍ଟ ଏଠାରେ ପ୍ରକାଶ କରୁଛୁ । କମିଟିର ସଦସ୍ୟମାନେ ଥିଲେ ନିହାର ଦାସ, ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ (ଓଡ଼ିଶା), ଭି.ଏସ୍.କ୍ରିଷ୍ଣା ଓ ଏନ୍ ଅମର, ହ୍ୟୁମାନ୍ ରାଇଟସ୍ ଫୋରମ୍ ଆନ୍ଧ୍ରପ୍ରଦେଶ, ଦେବ ରଞ୍ଜନ -ସାମାଜିକ କର୍ମୀ, ଦେବୀ ପ୍ରସନ୍ନ ସାମାଜିକ କର୍ମୀ ।

ଅନୁସନ୍ଧାନକାରୀ ଦଳର ପ୍ରାଥମିକ ତଦନ୍ତରୁ ଜଣାପଡେ ଯେ, ଏହି ତିନୋଟି ଘଟଣାରେ, କୌଣସି ଠାରେ ପୋଲିସ୍ ଓ ମାଓବାଦୀ ମଧ୍ୟରେ କୌଣସି

ଗୁଳି ବିନିମୟ ହୋଇନାହିଁ । ଏହି ସମସ୍ତ ଘଟଣାରେ ବଂଗର ପୋଲିସ୍ ଯେଉଁମାନଙ୍କ ମଧ୍ୟରେ ସୀମା ସୁରକ୍ଷାବଳ ବା BSF, ସ୍ପେଶିଆଲ ଅପରେସନ୍ ଗ୍ରୁପ ବା SOG ଓ District Voluntary Force (DVF) ସଂପୃକ୍ତ, ନିଜଆଡୁ ପ୍ରଥମରେ ଗୁଳିକରି ହତ୍ୟା କରିଛନ୍ତି ।

## ଲିଟିପୁଟ ଗ୍ରାମର ଗଙ୍ଗାଧର କିର୍ସାନୀକୁ ହତ୍ୟା

ଗଙ୍ଗାଧର କିର୍ସାନୀ (୩୦) ଜଣେ ଗଦ୍‌ବୀ ଆଦିବାସୀ ଚାଷୀ ଅଟେ । ଗଲା ଅକ୍ଟୋବର ୨୯ ତାରିଖ ଦିନ ସେ ନିଜର ସମ୍ପର୍କୀୟ ଭାଇ ତଥା ସାଙ୍ଗ ସମରା ଚାଲାନ୍ ସହିତ ସନ୍ଧ୍ୟାରେ ନିଜର କ୍ଷେତ ପାଇଁ ଯାଉଥିଲା । ଉଭୟେ ଗଲା ତିନି ସପ୍ତାହ ହେବ ନିୟମିତ କ୍ଷେତ ଜଗିବା ପାଇଁ ଯାଉଥିଲେ । କାରଣ ହରିଣ, ମାଙ୍କଡ଼ ଓ ବାରହା ଆସି ଫସଲ ଖାଇଯିବାର ସମ୍ଭାବନା ଥିଲା । ସେଦିନ ସେମାନେ ଆସିବା ବେଳେ ଗାଁ ପାଖ ଝୋଲାରୁ କଙ୍କଡ଼ା ମଧ୍ୟ ଧରିଥିଲେ । ସେମାନଙ୍କର ମଞ୍ଚାପାଖରେ ରାତିରେ ତାକୁ ରାନ୍ଧି ଖାଇବାର ଯୋଜନା ଥିଲା । ସେମାନେ ମଞ୍ଚାଆଡକୁ ଆସିଲାବେଳେ ହାତରେ ଥିବା ଟର୍ଚ୍ଚକୁ ଜଳାଇଥିଲେ ଓ ମୋବାଇଲରୁ ଗୀତମଧ୍ୟ ଶୁଣିଶୁଣି ଆସୁଥିଲେ । ସେମାନଙ୍କର ଜମି ତାଙ୍କ ଗ୍ରାମଠାରୁ ମାତ୍ର ଅଧ କିଲୋମିଟର ଦୁର ହେବ / ସେତେବେଳକୁ ରାତି ପ୍ରାୟ ଆଠଟା ବାଜିଥିଲା ।

ସେମାନଙ୍କ କ୍ଷେତ ଆଉ ବେଶୀ ଦୂର ନଥିଲା । ହଠାତ୍ ଅନ୍ଧାରରୁ, ସେମାନଙ୍କ ଡାହାଣ ପଟର ବୁଦା ପାଖରୁ ସେମାନଙ୍କ ଆଡକୁ ଗୁଳି କରାଯାଇଥିଲା, ତା ପୂର୍ବରୁ କୌଣସି ଘୋଷଣା ବା ଚେତାବନୀ ମଧ୍ୟ ଦିଆଯାଇନଥିଲା । ଗୁଳି ପ୍ରଥମେ ଗଙ୍ଗାଧରର ଦେହରେ ବାଜିଲା, କାରଣ ସେହି ପାଦଚଲା ରାସ୍ତାରେ ଚାଲୁଥିବା ବେଳେ ସେ ଆଗରେ ଥିଲା । ସମରା ଚାଲାନ୍ ତାର ମାତ୍ର କେତେ ଫୁଟ ପଛରେ ଥିଲା । ସମରାର କହିବା ଅନୁସାରେ BSF ମାନେ ଲୁଚିଥିବା ସ୍ଥାନ ଓ ତା' ମଧ୍ୟରେ ଜଙ୍ଗଲିଆ ବୁଦା ରହିଯାଇଥିଲା ।

ଯେଉଁଥି ପାଇଁକି ଗୁଳି ତା' ଦେହରେ ବାଜି ନଥିଲା । କିନ୍ତୁ ଗଙ୍ଗାଧରଙ୍କୁ ବହୁତ ପାଖରୁ ମରାଯାଇଥିବା କଥା ସେ କହିଥିଲା ।

ସମରା ଗୁଳିର ଆବାଜ୍ ଶୁଣି ତଳେ ପଡ଼ିଯାଇଥିଲା ଓ ଭୟରେ ଥରିଥରି ଉଠି ଗାଁ ଆଡ଼କୁ ଦୌଡ଼ିଲା । ଗାଁ ଲୋକେ ମାତ୍ର ପନ୍ଦର ମିନିଟ୍ ମଧ୍ୟରେ ଘଟଣା ସ୍ଥଳରେ ପହଞ୍ଚି ଯାଇଥିଲେ । ସେତେବେଳକୁ ଗଙ୍ଗାଧର ବଞ୍ଚିଥିଲା ଓ ସେ ଗୁଳି ବାଜିଥିବା ସ୍ଥାନରୁ ପ୍ରାୟ ପନ୍ଦର ଫୁଟ ବୁଦା ଆଡ଼କୁ ଘୁଞ୍ଚିଯାଇଥିଲା । ପ୍ରାୟତଃ BSFମାନେ ତାକୁ ଘୋଷାରି କରି ବୁଦା ଆଡ଼କୁ ନେଇଥିଲେ । ମାତ୍ର ଗ୍ରାମବାସୀ ପହଞ୍ଚିବା ବେଳକୁ ସେମାନେ ସେ ସ୍ଥାନ ଛାଡି ପଳେଇଯାଇଥିଲେ ।

ଗ୍ରାମବାସୀମାନେ ଗଙ୍ଗାଧରକୁ ଧରିକରି ଅଳ୍ପ କିଛି ମିଟର ଦୂରରେ ଯାଇଥିବା କଚା ମାଟି ରାସ୍ତା ଉପରକୁ ଆଣିବାକୁ ଚେଷ୍ଟାକଲେ । ସେମାନଙ୍କ ଉଦ୍ଦେଶ୍ୟ ଥିଲା ତୁରନ୍ତ ଗାଡ଼ି ଆଣି ଡାକ୍ତରଖାନାନେବା । ସେତେବେଳକୁ ସେ ବାରମ୍ବାର କହୁଥିଲା "ମୁଁ ମରିଯିବି । ମୁଁ ଆଉ ବଞ୍ଚିବନି", ତା'ର ସମ୍ପର୍କୀୟମାନେ ଦେଖିଲେ ଗଙ୍ଗାଧରର ସାମ୍ନା ଛାତି ଏବଂ ପେଟ ମଝିରେ ଚାରୋଟି କଣା ହୋଇଛି । ତା'ପରେ ତାକୁ ଓଲଟାଇ ଦେଲାବେଳକୁ ପିଠିପାଖେ ବିରାଟ କଣା ହୋଇ ଅନ୍ତବୁଜୁଳା ବାହାରି ଆସିଥିବା କଥା ସମ୍ପର୍କୀୟମାନେ ଆମ୍ଭମାନଙ୍କୁ କହିଥିଲେ । ଡାକ୍ତରଖାନା ଅଣାହେବା ପୂର୍ବରୁ ଗଙ୍ଗାଧର ଗୁଳିବାଜିବାର ପ୍ରାୟ ପଇଁତାଳିଶ ମିନିଟ୍ ମଧ୍ୟରେ ମରିଯାଇଥିଲା ।

ଗ୍ରାମବାସୀମାନେ ତୁରନ୍ତ ମାଛକୁଣ୍ଡ ଥାନା ଅଧିକାରୀଙ୍କୁ ଫୋନ୍ ମାଧ୍ୟମରେ ଘଟଣା ସମ୍ପର୍କରେ ଜଣାଇଥିଲେ ମଧ୍ୟ ପୋଲିସ୍ ତରଫରୁ କୌଣସି ତତ୍ପରତା ପ୍ରକାଶ ପାଇନଥିଲା । ତେଣୁ ରାତିସାରା ଲୋକେ ମୃତ ଦେହକୁ ସେହି ରାସ୍ତା ପାଖରେ ଜଗି ରହିଥିଲେ । ପରଦିନ (ଅକ୍ଟୋବର ୩୦) ଲିଟିପୁଟ ଓପାଖା ପାଖି ଗ୍ରାମର ୧୫୦ରୁ ଊର୍ଦ୍ଧ୍ୱ ଗ୍ରାମବାସୀମାନେ ମାଛକୁଣ୍ଡ ଥାନାକୁ ଆସିଥିଲେ । ସେଠାରେ ସେମାନେ ପୋଲିସ୍ ଆଇ.ଆଇ.ସି ଶ୍ରୀଯୁକ୍ତ ରାଉତରାୟଙ୍କୁ ଲିଖିତ

ଆକାରରେ ଘଟଣା ସମ୍ପର୍କରେ ଜଣାଇଥିଲେ । ନିଜ ଲେଖାରେ ସେମାନେ ଗଙ୍ଗାଧର ଜଣେ ସାଧାରଣ ଆଦିବାସୀ ଏବଂ ତାର କୌଣସି ମାଓବାଦୀଙ୍କ ସହିତ ସମ୍ପର୍କ ନଥିଲା କିନ୍ତୁ BSF ମାନେ ତାଙ୍କୁ ଗୁଳିକରି ହତ୍ୟା କରିଥିବା କଥା ଉଲ୍ଲେଖ କରିଥିବା ବିଷୟରେ ଆମକୁ କହିଥିଲେ । ଦିନ ଦୁଇଟା ପର୍ଯ୍ୟନ୍ତ ପୋଲିସ୍ ନ ଆସିବାରୁ କ୍ରୋଧିତ ଗ୍ରାମବାସୀ ଥାନାର ଲୁହାଗ୍ରିଲ୍ ବାଡ଼େଇବା ସହିତ ଥାନା ଭିତରର ଟେବୁଲ୍‌କୁ ଭାଙ୍ଗିଦେଇଥିଲେ । ପରେ ପୋଲିସ୍ ସନ୍ଧ୍ୟା ପାଞ୍ଚଟା ବେଳକୁ ଲିଟିପୁଟ ଗ୍ରାମରେ ପହଞ୍ଚିଥିଲା ଓ ମୃତଦେହକୁ ପୋଷ୍ଟମୋର୍ଟମ୍ ପାଇଁ କୋରାପୁଟ ଡାକ୍ତରଖାନା ନେଇଥିଲେ । ସେହି ରାତିରେ ତାର ସମ୍ପର୍କୀୟମାନଙ୍କୁ ମୃତଦେହ ହସ୍ତାନ୍ତର ମଧ୍ୟ କରାଯାଇଥିଲା । ଅକ୍ଟୋବର ୩୧ ତାରିଖ ଦିନ ଗଙ୍ଗାଧରର ମୃତ ଦେହ ଲିଟିପୁଟ ଗ୍ରାମରେ ଦାହ କରାଯାଇଥିଲା । ଅନୁସନ୍ଧାନରୁ ଆହୁରି ଜଣାପଡେ ଯେ ଗଙ୍ଗାଧର ଜଣେ ଚାଷୀ । ତା'ର ଚାରିଏକର ଚାଷ ଜମି ଥିଲା । ସେଥିରେ ସେ ଧାନ ଏବଂ ମାଣ୍ଡିଆ ଆଦି ଚାଷ କରୁଥିଲା । ଏବେ ତାର ସ୍ତ୍ରୀ ଏବଂ ଦୁଇ ପୁଅ ଅଛନ୍ତି ।

ଲିଟିପୁଟ ଗ୍ରାମ ମାଛକୁଣ୍ଡ ଡ୍ୟାମ ଏବଂ ବିଦ୍ୟୁତ୍ ଯୋଜନା ପ୍ରକଳ୍ପ ଠାରୁ ୮-୧୦ କିମି ଦୂରରେ ଅବସ୍ଥିତ । ଏଠାରେ ପ୍ରାୟ ୩୦ରୁ ୪୦ ଘର ଅଛନ୍ତି । ଅଧିକାଂଶଙ୍କ ପାଖରେ ଜମି ଅଛି । ଜଙ୍ଗଲ ଜମି ଉପରେ ଆଦିବାସୀର ଅଧିକାରକୁ ନେଇ ଏମାନେ କିଛି ବର୍ଷ ଆଗରୁ ଏକ ବଡ଼ ଲଢ଼େଇ ଲଢ଼ିଥିଲେ । ସେଥିପାଇଁ ଗ୍ରାମର ବେଶ୍ କେତେ ଜଣଙ୍କୁ ଜଙ୍ଗଲ ଏବଂ ଜମି ଉପରେ ପଟ୍ଟା ମିଳିଅଛି । ମାତ୍ର ଏଯାବତ୍ ଜଙ୍ଗଲ ଜମି ଉପରେ ଗୋଷ୍ଠୀଗତ ପଟ୍ଟା ଅଧିକାର ମିଳି ନାହିଁ । ଯେଉଁଥିପାଇଁ କି ଏବେବି ସେମାନେ ନିଜର ଲଢ଼େଇ ଜାରି ରଖିଥିବା କଥା ସେହି ଗ୍ରାମବାସୀମାନେ ଆମକୁ କହିଥିଲେ । ଆମ୍ଭମାନଙ୍କୁ ଗ୍ରାମବାସୀ ଏକଥା ମଧ୍ୟ କହିଥିଲେ ଯେ, ମାଛକୁଣ୍ଡଠାରେ ପୋଲିସ୍ ଆଇ.ଆଇ.ସି ଶ୍ରୀଯୁକ୍ତ ରାଉତରାୟ ନଗଦ ୧୫ହଜାର ଟଙ୍କା ଓ କୋରାପୁଟଠାରେ ୩୫ ହଜାର ଟଙ୍କା ଗଙ୍ଗାଧରର ଭାଇ ଜଗୁ କିର୍ସାନୀକୁ ତାର

ପରିବାରର ଖର୍ଚ୍ଚ ପାଇଁ ଦେଇଥିଲେ । ଲମତାପୁଟ ବି.ଡି.ଓ ଗଙ୍ଗାଧରର ପରିବାରକୁ ୨୦,୦୦୦ ହଜାର ଟଙ୍କାର ଚେକ୍ ମଧ୍ୟ ଦେଇଥିଲେ ।

ଯଦିଓ BSF ନିଜ ଆଡ଼କୁ ଗୁଳିକରି ଗଙ୍ଗାଧରକୁ ହତ୍ୟା କରିଛି, ତଥାପି ପୋଲିସ୍ ଏକ ମିଥ୍ୟା ଯୁକ୍ତି ବାଢ଼ିବାରେ ଲାଗିଥିଲା ଯେ ନକସଲ ଦମନ ଅଭିଯାନରେ ଗଙ୍ଗାଧର ନାମକ ମାଓବାଦୀର ମୃତ୍ୟୁ ହୋଇଛି । ସାମ୍ବାଦିକମାନଙ୍କୁ ଦକ୍ଷୀଣ-ପଶ୍ଚିମାଞ୍ଚଳ DIG, S.Debadatta Singh ଏ ସମ୍ପର୍କରେ କହିଥିଲେ, "ଲିଟିପୁଟ ପାଖ ଜଙ୍ଗଲରେ ପ୍ରାୟ ରାତି ୯ଟା ସମୟରେ ୫୦ରୁ ୬୦ଜଣ ମାଓବାଦୀ ଥିବା କଥା ଆମର BSFର ଏକ ୩୦ ଜଣିଆ ବାହିନୀ ଠାବ କଲେ । ମାଓବାଦୀମାନେ BSF ମାନଙ୍କୁ ଦେଖିଲା ମାତ୍ରେ ଗୁଳି କରିବା ଆରମ୍ଭ କରିଦେଲେ, କିନ୍ତୁ ଆମର ଲୋକେ ତୁରନ୍ତ ତାର ପାଲଟା ଜବାବ ଦେଲେ । ପ୍ରାୟ ୨୦ ମିନିଟ୍ ଧରି ଲଢ଼େଇ ଚାଲିଥିଲା ଓ ପ୍ରାୟ ୩୦ ରାଉଣ୍ଡ ଗୁଳି ବିନିମୟ ହୋଇଥିଲା । ଏଥିରେ ଗଙ୍ଗାଧରର ମୃତ୍ୟୁ ଘଟିଲା, DIG ଏକଥା ମଧ୍ୟ କହିଲେ ଯେ ଗଙ୍ଗାଧର ଜଣେ ମାଓବାଦୀ ଥିଲା କି ଏପରି ଗୁଳିବିନିମୟ ହେଉଥିବାବେଳେ ମଝିରେ ପଡିଗଲା ତାହାର ଅନୁସନ୍ଧାନ କରାଯାଇଛି । ଯଦି ଗଙ୍ଗାଧର ନିରୀହ ହୋଇଥିବ, ତେବେ ସରକାରୀନୀତି ଅନୁସାରେ ତାହାକୁ ଉପଯୁକ୍ତ କ୍ଷତିପୂରଣ ଦିଆଯିବ । ଆମ୍ଭ ଅନୁସନ୍ଧାନରୁ ସ୍ପଷ୍ଟ ହୁଏ ଯେ ଗଙ୍ଗାଧର କଦାପି ଜଣେ ମାଓବାଦୀ କ୍ୟାଡର ନଥିଲା । ସେ ଜଣେ ଆଦିବାସୀ ଚାଷିଯାହାକୁ ଅକ୍ଟୋବର ୨୯ ତାରିଖ ସନ୍ଧ୍ୟାରେ BSF ବାହିନୀ, ସେ ନିଜର କ୍ଷେତକୁ ଜଗିବାକୁ ଯାଉଥିବା ସମୟରେ ଅତି ନିକଟରୁ ଗୁଳି କରିହତ୍ୟା କରିଛନ୍ତି । ପୋଲିସ୍ ଯାହା କହୁଛି ଯେ ମାଓବାଦୀ ଓ ସେମାନଙ୍କ ମଧ୍ୟରେ ଗୁଳି ବିନିମୟ ହୋଇଥିଲା ତାହା ସମ୍ପୂର୍ଣ୍ଣ ମିଥ୍ୟା । ଏହା BSF ବାହିନୀର ନିଛକ ହତ୍ୟା ବ୍ୟତୀତ ଆଉ କିଛି ନୁହେଁ । ଏହି ବିଷୟରେ ପୋଲିସ ଅଧିକାରୀ ଓ ବିଡ଼ିଓଙ୍କୁ ସାକ୍ଷାତ କରିବାକୁ ଚେଷ୍ଟାକରି ବିଫଳ ହୋଇଥିଲୁ ।

ପୋଲିସ ଏ ଦିଗରେ କେବଳ ମାଓବାଦୀ ସହିତ ଗୁଳିବିନିମୟ ଓ ଏକ ଏନକାଉଣ୍ଟର ମୃତ୍ୟୁ କଥା କହି ଏହି କେସକୁ ବନ୍ଦ କରିଦେଇ ପାରିବ ନାହିଁ। ଏହି ଦେଶର ସମ୍ବିଧାନ ଓ ତତ୍‌ସଲଗ୍ନ ନିୟମ ଏକଥା କୁହେ ଯେ, ଯଦି ଏପରି କୌଣସି ଘଟଣାରେ ସାଧାରଣ ଲୋକର ମୃତ୍ୟୁ ହୋଇଥାଏ, ତେବେ ସେହି ହତ୍ୟା ଘଟଣାରେ ସଂପୃକ୍ତ ପୋଲିସ ବାହିନୀ ଓ ସେମାନଙ୍କ ଅଧିକାରୀଙ୍କ ବିରୁଦ୍ଧରେ ହତ୍ୟା ମକଦ୍ଦମା ରୁଜୁ ହେବା ସହିତ ସେମାନଙ୍କୁ ଦଣ୍ଡିତ କରାଯିବ। ତେଣୁ ଗଙ୍ଗାଧରର ହତ୍ୟା ଘଟଣାରେ ସଂପୃକ୍ତ ସମସ୍ତ BSF ଜବାନ୍ ଓ ନେତୃତ୍ୱ ନେଉଥିବା ଅଧିକାରୀ ବିରୁଦ୍ଧରେ ହତ୍ୟା ମକଦ୍ଦମା ରୁଜୁ ହେବା ଜରୁରୀ। କୌଣସି ପୋଲିସ୍ ଅଧିକାରୀ, DIG ବା କୌଣସି ଅଧିକାରୀଙ୍କର ନୀତିଗତ ଅଧିକାର ନାହିଁ ଯେ ସେ ଗଙ୍ଗାଧର ଜଣେ ମାଓବାଦୀ କି ସାଧାରଣ ଆଦିବାସୀ ସେ କଥା ନିଶ୍ଚିତ କରିବେ। ଏକଥା କେବଳ କୋର୍ଟରେ ହିଁ ନିଷ୍ପତ୍ତି ହୋଇପାରିବ। ଅବଶ୍ୟ ଏହା ପୂର୍ବରୁ ଘଟଣାର ପ୍ରକୃତ ଅନୁସନ୍ଧାନ ହେବା ନିତ୍ୟାନ୍ତ ଜରୁରୀ।

## ଚିଲିବା ଗ୍ରାମରେ ମାଓବାଦୀ କମାଣ୍ଡରକୁ ହତ୍ୟା :

ଅଗଷ୍ଟ ୨୪ ତାରିଖ ଦିନ ଉଭୟ ମାଲକାନଗିରି ଓ କୋରାପୁଟ ପୋଲିସର ଉଚ୍ଚ ଅଧିକାରୀମାନେ ସାମ୍ବାଦିକମାନଙ୍କୁ ବୟାନ ଦେଇଥିଲେ ଯେ ଏହାର ଦିନକୁ ଆଗରୁ ଅର୍ଥାତ୍ ଅଗଷ୍ଟ ୨୩ ତାରିଖ ଦିନ ଚିଲିବା ଜଙ୍ଗଲରେ ଏକ ଘମାଘୋଟ ଲଢ଼େଇରେ ଜଣେ ମାଓବାଦୀ କମାଣ୍ଡର ମାଧବ ଓରଫ ଜି.ରାମୁଲୁର ଏନକାଉଣ୍ଟରରେ ମୃତ୍ୟୁ ହୋଇଛି। ତା'ଉପରେ ୪ଲକ୍ଷ ଟଙ୍କାର ପୁରସ୍କାର ରାଶି ସରକାରଙ୍କ ତରଫରୁ ଘୋଷଣା କରାଯାଇଥିଲା। ଏଦିଗରେ ପୋଲିସର କହିବା କଥା ହେଲା ଯେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରୁ ଖବର ମିଳିବା ପରେ ଉଭୟ କୋରାପୁଟ, ମାଲକାନଗିରିର ପୋଲିସ ଓ SOGର ମିଳିତ

କୋମ୍ବିଂ ଅପରେସନ୍ ଚାଲିଥିଲା । ସେହି ଅପରେସନ୍ ସମୟରେ କୋରାପୁଟ ଜିଲ୍ଲା ଲମତାପୁଟ ବ୍ଲକ୍ ଅନ୍ତର୍ଗତ ଚିଲିବା ଜଙ୍ଗଲ ମଧ୍ୟରେ ଏକ ମାଓବାଦୀ କ୍ୟାମ୍ପ ଠାବ କରାଯାଇଥିଲା, ଯଦିଓ ପୋଲିସ ତରଫରୁ ମାଓବାଦୀଙ୍କୁ ଆତ୍ମସମର୍ପଣ ପାଇଁ କୁହାଗଲା ମାତ୍ର ସେମାନେ ଓଲଟି ପୋଲିସ୍ ବାହିନୀ ଉପରକୁ ଗୁଳି କରିବା ଆରମ୍ଭ କରିଦେଲେ । ନିଜକୁ ରକ୍ଷା କରିବାକୁ ଯାଇ ପୋଲିସ୍ ବାହିନୀ ମଧ୍ୟ ଗୁଳି କରିବା ଆରମ୍ଭ କରିଥିଲେ । ଏଥିରେ ଆନ୍ଧ୍ରପ୍ରଦେଶ ଓଡ଼ିଶା ବୋର୍ଡର Special Zonal Committee ର ସଦସ୍ୟ ମାଧବର ମୃତ୍ୟୁ ହେଲା । ପୋଲିସ ଏକଥା ମଧ୍ୟ କହିଥିଲା ଯେ, ତାଙ୍କ ସହିତ ଆଉ ଚାରିଜଣ ମାଓବାଦୀ ସଦସ୍ୟ ମଧ୍ୟଥିଲେ । ଯେଉଁମାନେ କି ଖସିଗଲେ, ସେମାନଙ୍କୁ ପୋଲିସ ଏବେବି ଖୋଜୁଛି । ମାଲକାନଗିରି ପୋଲିସ ଅଖିଳେଶ ସିଂ ମିଡିଆକୁ ଦେଇଥିବା ତଥ୍ୟ ଅନୁସାରେ ରାମୁଲୁ ଜଣେ ଦୁର୍ଦ୍ଦାନ୍ତ ମାଓବାଦୀ । ସେ ବହୁ ହତ୍ୟା, ଜବରଦସ୍ତି ଅର୍ଥ ଆଦାୟ ଓ ଲ୍ୟାଣ୍ଡମାଇନ୍ ବ୍ଲାଷ୍ଟ ପଛରେ ସଂପୃକ୍ତ ଥିଲା ।

କମିଟିର ଅନୁସନ୍ଧାନରୁ ଜଣା ପଡ଼େ ସେ ପୋଲିସ୍‌ର ଏ ବୟାନ ସମ୍ପୂର୍ଣ୍ଣ ଭାବରେ ମନଗଢ଼ା ମିଥ୍ୟା କାହାଣୀ ଅଟେ । ରାମୁଲୁ ଜଣେ ମାଓବାଦୀ ସଦସ୍ୟ । ମାତ୍ର ଅଗଷ୍ଟ ୨୨ ତାରିଖ ଦିନ ବାଲେଲ୍ ପଞ୍ଚାୟତର ଚିଲିବା ଗ୍ରାମକୁ ସେ ଏକୁଟିଆ ଆସିଥିଲା, ସନ୍ଧ୍ୟା ହୋଇ ଆସିଥିବା ହେତୁ ଜଣେ କୃଷକର ଘରକୁ ଲାଗି ପାଖ ଚାଳିରେ ଆଶ୍ରୟ ନେଇଥିଲେ । ମାଧବ ଯେ ଜଣେ ମାଓବାଦୀ ସେ କଥା ଗ୍ରାମବାସୀଙ୍କୁ ଜଣା ନଥିଲା । ତାଙ୍କ କହିବା ଅନୁସାରେ ସେମାନେ ଜଣେ ଆଶ୍ରୟ ଚାହୁଁଥିବା ସାଧାରଣ ଲୋକ ଭାବି ଘର ପାଖ ଚାଳିରେ ଆଶ୍ରୟ ଦେଇଥିଲେ । କୃଷକ ଜଣକ ନିଜ ପାଖରେ ଥିବା ଶେଯ, ଚାଦରଟିଏ ମଧ୍ୟ ଘୋଡ଼େଇବାକୁ ଦେଇଥିଲେ ।

ପୋଲିସ ପାଖରେ କୌଣସି ସୂତ୍ରରୁ ଏ ଖବର ଅବଶ୍ୟ ଥିଲା ଯେ ମାଧବ ଆସି ଚିଲିବା ଗ୍ରାମରେ ପହଞ୍ଚିଛି । ଅଗଷ୍ଟ ୨୩ ତାରିଖ ଦିନବେଳା (ପ୍ରାୟ ୧୦ଟା

ବେଳେ) ଦୁଇ ଜଣ ସଶସ୍ତ୍ର ପୋଲିସ୍ ସେ ବିଶ୍ରାମ ନେଉଥିବା ସ୍ଥାନକୁ ଗଲେ ଓ ପାଖରୁ ତାକୁ ଗୁଳି କରି ହତ୍ୟାକଲେ । ସେମାନେ ଅତିଶୀଘ୍ର ମୃତ ଦେହକୁ ସେ ଶୋଇଥିବା ବିଛଣା ଓ ଚାଦର ସହିତ ବାନ୍ଧି ପଛରେ ଆସୁଥିବା ପୋଲିସ୍ ଗାଡିର (ବୋଲୋରୋ) ଉପରେ ପକାଇ ତୁରନ୍ତ କୋରାପୁଟ ନେଇ ଆସିଥିଲେ । ବୋଲୋରୋ ଗାଡିରେ ବେଶ କିଛି ସଶସ୍ତ୍ର ପୋଲିସ୍ ଥିଲେ । ଯେଉଁମାନେ କି ଆଗରେ ଥିବା ଦୁଇ ପୋଲିସ୍ ଜବାନ୍ ଓ ସେମାନଙ୍କ ମୋଟର ସାଇକଲ୍ ପଛେ ପଛେ ଚିଲିବା ଗ୍ରାମକୁ ଆସିଥିବା ତଥା ଦୂରରୁ ଏହା ଦେଖିଥିବା କଥା ଗ୍ରାମବାସୀମାନେ ଆମକୁ କହିଥିଲେ । ପୋଲିସ୍ ମୃତ ଦେହକୁ କୋରାପୁଟ ଆଣିବା ପରେ ଏହି ମନଗଢ଼ା ମିଥ୍ୟା କାହାଣୀ ତିଆରି କରିଥିଲା ଯେ ଚିଲିବା ଜଙ୍ଗଲରେ ଏକ ଘମାଘୋଟ ଲଢ଼େଇ ହେଲା ଏବଂ ଜଣେ ମାଓବାଦୀ ନିହତ ହେଲେ । ଏହି ବିଷୟରେ ପୋଲିସ୍ ସହ ଯୋଗାଯୋଗ କରିବାକୁ ଉଦ୍ୟମ କରିଥିଲେ ସୁଦ୍ଧା ସକ୍ଷମ ହୋଇନଥିଲୁ ।

ଆମେ ଏଠାରେ କହୁ ନାହୁଁ ଯେ, ରାମୁଲୁ କୌଣସି ହତ୍ୟା ଘଟଣାରେ ସଂପୃକ୍ତ ନଥିଲା ବା କୌଣସି ପୋଲିସ୍ ଜବାନ୍ ବା ସାଧାରଣ ଲୋକଙ୍କୁ ହତ୍ୟା କରିନାହିଁ । ଆମେ ଏଠାରେ ଏକଥା କହୁଛୁ ଯେ ଜଣେ ନିରସ୍ତ୍ର ମାଓବାଦୀ ରାମୁଲୁ ଭଳି ଘଟଣାରେ ପୋଲିସ୍ ତାକୁ ତୁରନ୍ତ ନିଜ କବଜାକୁ ଆଣି ଆରେଷ୍ଟ କରି ଜେଲକୁ ପଠାଇ ପାରିଥାଆନ୍ତା । ଯାହାକି ପୋଲିସ୍‌ର କାର୍ଯ୍ୟମଧ୍ୟ । ତା'ପରେ କୋର୍ଟରେ ସେ କରିଥିବା ଅପରାଧ ସମ୍ପର୍କରେ ବିଚାର ହୋଇ ଦଣ୍ଡିତ ହୋଇଥାଆନ୍ତା । ମାତ୍ର ପୋଲିସ୍ ସେ କାର୍ଯ୍ୟ ନ କରି ଅତି ପାଖରୁ ତାକୁ ଗୁଳି କରି ହତ୍ୟା କଲା ।

ଆମେ ଆମର ତଥ୍ୟ ଅନୁସନ୍ଧାନ ସମୟରେ ଏକଥା ମଧ୍ୟ ବାହାର ସୂତ୍ରରୁ ଏପରିକି କୋରାପୁଟ ଓ ମାଲକାନାଗିରି ଜିଲ୍ଲାର ସାମ୍ବାଦିକଙ୍କ ଠାରୁ ଶୁଣିବାକୁ ପାଇଲୁ ଯେ ରାମୁଲୁ ପ୍ରକୃତରେ ସରକାରଙ୍କଠାରେ ଆତ୍ମସମର୍ପଣ କରିବା ପାଇଁ

ଇଚ୍ଛା ପ୍ରକାଶ କରିଥିଲା । ବୋଧହୁଏ ସେ ଏଥିପାଇଁ ଚିଲିବା ଗ୍ରାମରେ ପୂର୍ବସୂଚନା ଅନୁସାରେ ପୋଲିସକୁ ଅପେକ୍ଷା କରିଥିଲା । ପୋଲିସ ଆସିବାର ସୂଚନା ପାଇ ନିଜକୁ ପ୍ରସ୍ତୁତି କରୁଥିବା ବେଳେ ତାକୁ ହତ୍ୟା କରାଯାଇଛି ।

## ସିଲାକୋଟା ଜଙ୍ଗଲରେ ପୋଲିସର ଗଣହତ୍ୟା :

ଏହାପରେ ତଥ୍ୟାନୁସନ୍ଧାନ ଦଳ ମାଲକାନାଗିରି ଜିଲ୍ଲାର ସିଲାକୋଟା ଗସ୍ତ କରିଥିଲା । ସିଲାକୋଟା ଗଣହତ୍ୟା ପୋଲିସର ସବୁଠାରୁ ବଡ଼ ଏନ୍‌କାଉଣ୍ଟର ଘଟଣା ବୋଲି ଦାବୀକରେ । ଏହା ସେପ୍ଟେମ୍ବର ୧୪ ତାରିଖରେ ବଡିଭୋର୍‌ରେ ହୋଇଥିଲା ଓ ଏଥିରେ ଓଡ଼ିଶା ସରକାରଙ୍କ SOG ଓ DVF ସଂପୃକ୍ତ ଥିଲେ । ସିଲାକୋଟା ଜଙ୍ଗଲ ସିଲାକୋଟା ଗାଁକୁ ଲାଗିକରି ଅଛି ଓ ଏହା ମାଲକାନ୍‌ଗିରି ଜିଲ୍ଲାର ପଡିଆ ବ୍ଲକ୍ ଅନ୍ତର୍ଗତ ବାପାନ୍ନାପଲ୍ଲୀ ପଞ୍ଚାୟତରେ ଆସୁଅଛି । କୋୟା ଆଦିବାସୀ ବହୁଳ ଏହି ସିଲାକୋଟା ଗାଁରେ ଏକ ସରକାରୀ ଆବାସିକ ସ୍କୁଲ ୧୯୫୩ରୁ ଚାଲିଛି । ସିଲାକୋଟା ଗ୍ରାମ ପଡ଼ୋଶୀ ଛତିଶଗଡର ସୁକମା ଜିଲ୍ଲାର ଦୋର୍ଣ୍ଣାପାଲ ଅଞ୍ଚଳଠାରୁ ୧୦କ.ମି ଦୂରରେ ଅବସ୍ଥିତ ।

ଯାହା ଜଣାପଡେ, ମାଓବାଦୀଙ୍କର କାଲିମେଲା ଦଲମ୍‌ର ପ୍ରାୟ ୨୦ଜଣ ସଦସ୍ୟ ସେପ୍ଟେମ୍ବର ୧୩ ତାରିଖ ସନ୍ଧ୍ୟାରେ ସିଲାକୋଟା ସ୍କୁଲ୍ ପଛପଟେ ଥିବା ଜଙ୍ଗଲରେ ନିଜର କ୍ୟାମ୍ପ କରିଥିଲେ । ଲୋକଙ୍କ କହିବା କଥା ହେଲା, ଦଲମ୍‌ର ସଦସ୍ୟମାନେ ପାଖ ଗାଁରୁ ଖାଇକରି ଆସିଥିଲେ । ତେଣୁ ସେମାନେ ସେଇ ସନ୍ଧ୍ୟାରେ ଆସିବା କଥା ଗ୍ରାମବାସୀଙ୍କୁ ଜଣାନଥିଲା । ସେହି ଅଞ୍ଚଳଟି ଦୁଇପାହାଡ଼ ମଝା ମଝି ଘଞ୍ଚ ଜଙ୍ଗଲ ମଧ୍ୟରେ କିଛି ବର୍ଗଫୁଟର ଏକ ଫାଙ୍କା ସମତଳ ଅଞ୍ଚଳ ଥିଲା । ମାତ୍ର ପୋଲିସକୁ ନିର୍ଦ୍ଦିଷ୍ଟ ଭାବରେ ସୂଚନା ଥିଲା ଯେ, ଦଲମ୍‌ର ସଦସ୍ୟମାନେ ସେଠାରେ ଆଶ୍ରୟ ନେଇଛନ୍ତି ।

ସେହି ସେପ୍ଟେମ୍ବର ୧୩-୧୪ ର ମଧ୍ୟ ରାତ୍ରିରେ SOG ଓ DVF ବାହିନୀ ଚାଲି ଚାଲି ଜଙ୍ଗଲରେ ସେହି ମଧ୍ୟବର୍ତ୍ତୀ ଅଞ୍ଚଳରେ ପହଞ୍ଚିଥିଲେ । ସେମାନେ ପ୍ରାୟ ଭୋର୍ ଚାରିଟା ବେଳକୁ କ୍ୟାମ୍ପ୍‌ର ତିନି ପାଖକୁ ଘେରିଯାଇ ଅନ୍ଧାଧୁନିଆ ଗୁଳି ଚଳାଇବା ଆରମ୍ଭ କଲେ । ଶୋଇଥିବା ବେଳେ ସେ ମଧ୍ୟରୁ ୧୩ ଜଣଙ୍କର ମୃତ୍ୟୁ ହେଲା, ବାକି ଜଙ୍ଗଲ ମଧ୍ୟକୁ ଚାଲିଗଲେ ।

୧୩ଜଣ ମୃତକଙ୍କ ମଧ୍ୟରୁ ୫ଜଣକୁ ତାଙ୍କ ପରିବାର ଲୋକ ଚିହ୍ନିତ କଲେ ଓ ବାକି ଆଠ ଜଣକୁ ଦାବୀ କରିବାକୁ କେହି ଆସିନଥିଲେ । ଯେଉଁ ୫ଜଣକୁ ଚିହ୍ନିତ କରାଗଲା, ସେମାନଙ୍କୁ କାଳିମେଳା ଦଲମ୍‌ର ସଦସ୍ୟ ବୋଲି ପୋଲିସ୍ କହୁଛି । ବାକି ଆଠ ଜଣକୁ ଚିହ୍ନିତ କରାଯାଇ ପାରିଥିଲେ,ସେମାନଙ୍କ ମଧ୍ୟରୁ କେତେକ ପୁଣି ସାଧାରଣ ଲୋକ ବାହାରିଥାଆନ୍ତେ । ମାତ୍ର ପ୍ରଶାସନ ଏ ଦିଗରେ କୌଣସି ବିଶେଷ ପଦକ୍ଷେପ ନ ନେଇ ସେମାନଙ୍କୁ ସତ୍କାର କରିଦେଇଛି ।

ସିଲାକୋଟା 'ଏନକାଉଣ୍ଟର' ୧୩ଜଣ 'ମାଓବାଦୀ' ମୃତ ହେବା, ପୋଲିସ୍‌ର ବିରାଟ ସଫଳତା ବୋଲି ଖବର କାଗଜ ଓ T.V. Channel ରେ ପ୍ରକାଶିତ ପାଇଥିଲା । ଏହା ଦୁର୍ଭାଗ୍ୟପୂର୍ଣ୍ଣ ଯେ ପୋଲିସ୍ ବାହିନୀର ଅତି ବରିଷ୍ଠ ଅଧିକାରୀମାନେ ମଧ୍ୟ ଏଭଳି ଘଟଣାକୁ ପ୍ରଶଂସା କରିବାକୁ ଲାଗିଥିଲେ । ମାଲକାନ୍‌ଗିରି ଏସ୍.ପି. ଅଖିଳେଶ୍ ସିଂ, ଯିଏକି ସେଦିନ ସିଲାକୋଟା ଘଟଣାର ନେତୃତ୍ୱ ନେଇଥିଲେ, ସେ ମିଡିଆ ସାମ୍ନାରେ କହିଥିଲେ, "ସେମାନଙ୍କୁ ଆତ୍ମ ସମର୍ପଣ କରିବା ମଧ୍ୟ ଯଥାର୍ଥ ନୁହେଁ, ଯଦି ମୁଁ କହିଥାଆନ୍ତି, ତେବେ ତୁମେ ଭାବୁଛ କି ସେମାନେ ଆତ୍ମ ସମର୍ପଣ କରିଥଆନ୍ତେ? ବରଂ ସେମାନେ ଆମ ଆଡ଼କୁ ଗୁଳି କରିବା ଆରମ୍ଭ କରିଥାଆନ୍ତେ ଓସେଥିରେ ଆମର କେତେକ ଜବାନ୍ ନିଶ୍ଚୟ ମରିଥାଆନ୍ତେ । ଏହା ଏକ ଜଙ୍ଗଲ ଯୁଦ୍ଧ ।" ସେ ପୁଣି କହିଛନ୍ତି, "ଏହା ଠୋସ୍ ତଥ୍ୟରଆଧାରରେ ଅପରେସନ୍ ଥିଲା । ଆମେ ସେଠାରେ ଚାଲି

ଚାଲି ଯାଇ ପହଞ୍ଚିଯାଇଥିଲୁ । ସେ ସମୟରେ ବର୍ଷା ହେଉଥିଲା ଓ ତାହା ଆମକୁ ସାହାଯ୍ୟ କରିଥିଲା । କାରଣ ଆମେ ଆସିବାର ଶବ୍ଦ ମଧ୍ୟ ସେମାନଙ୍କୁ ଜଣା ପଡିଲା ନାହିଁ । ବର୍ଷା ହେଉଥିବା ହେତୁ ସେମାନଙ୍କ ସେଣ୍ଟ୍ରିମାନେ ମଧ୍ୟ Tent ଭିତରେ ଥିଲେ ।

ପୋଲିସ୍ ଏସ୍.ପିଙ୍କର ଏହି ମନ୍ତବ୍ୟ ଏ ଦେଶର ନିୟମ କାନୁନ୍‌କୁ ବେଖାତିର କରୁଥିବା କଥା ଦର୍ଶାଉଛି । ସର୍ବଦା ଏକ 'ଏନ୍‌କାଉଣ୍ଟର'ର ଅର୍ଥ ଗୁଳି ବିନିମୟରେ ହେବା କଥା ଜଣାଯାଇଥାଏ । ଏସ୍.ପି ନିଜେ ନିଜର କଥାରେ ଏକଥା ମାନୁଛନ୍ତି ଯେ, ସିଲାକୋଟା ଜଙ୍ଗଲରେ ସେଭଳି କୌଣସି ଗୁଳି ବିନିମୟ ହୋଇନାହିଁ । ଏହି ଗୁଳିକାଣ୍ଡ ଏକ ପାଖିଆ ଥିଲା ଓ ପୋଲିସ୍ ତରଫରୁ ଏହା କରାଯାଉଥିବା କଥା ଏହା ନିଶ୍ଚିତ କରୁଛି । ଏହା ସମ୍ପୂର୍ଣ୍ଣ ମିଥ୍ୟା ଏନ୍‌କାଉଣ୍ଟର ଓ ଏକ ଗଣହତ୍ୟା ବ୍ୟତୀତ ଆଉ କିଛି ନୁହଁ ।

ଓଡ଼ିଶା ଡି.ଜି. ପ୍ରକାଶ ମିଶ୍ର ଏହି ସିଲାକୋଟା ଘଟଣା ପରେ ମିଡିଆ ସାମ୍ନାରେ କହିଛନ୍ତି- ଏହା ଅନ୍ୟ ରାଜ୍ୟର ମାଓବାଦୀଙ୍କ ପାଇଁ ଏକ ଶକ୍ତ ଚେତାବନୀ ଅଟେ । ସେମାନେ ଯଦି ଓଡ଼ିଶାକୁ ଆସନ୍ତି, ତେବେ ଏହି ସମାନ ଅବସ୍ଥା ଭୋଗିବେ, ଏପରିକି ସେ ଆଉପାଦେ ଆଗେଇଯାଇ ଏଭଳି ହତ୍ୟା ଘଟଣାରେ ସଂପୃକ୍ତ ଜବାନ୍‌ମାନଙ୍କ ପୁରସ୍କାର ଆକାରରେ ଦେବା ପାଇଁ ଅର୍ଥରାଶି ଘୋଷଣା କରିଛନ୍ତି । ଡି.ଜିଙ୍କ ଏହି ମନ୍ତବ୍ୟ ସମ୍ପୂର୍ଣ୍ଣ ଦାୟିତ୍ୱହୀନ ଓ ଅସାମ୍ବାଦିକ ଅଟେ । (Source; Malkangiri, Mole helped Odisha & perfect encounter that left 13 maoists dead' in MANIPAL WORLD NEWS on September 16, 2013)

ଅନୁଧ୍ୟାନ କରିଥିବା ଏହି ତିନୋଟି ଘଟଣାରୁ ଆମେ ଦୃଢଭାବରେ ଏକଥା କହୁଛୁ ଯେ ପୋଲିସର ଗୁଳିବିନିମୟ ହେତୁ ଯେ ୧୫ ଜଣଙ୍କର ମୃତ୍ୟୁ

ହେଲା ବୋଲି ଯାହା କୁହାଯାଇଛି, ତାହା ସମ୍ପୂର୍ଣ୍ଣ ଭାବରେ ପୋଲିସ୍‌ର ମନଗଢ଼ା କାହାଣୀ ଅଟେ । ଏହା ପ୍ରମାଣିତ ଯେ, ପୋଲିସ୍ ପଟରୁ ଜାଣିକରି ଏକପାଖିଆ ଗୁଳିକରି ସେହି ୧୫ଜଣଙ୍କୁ ହତ୍ୟା କରାଯାଇଛି । ନିଜର ସୁରକ୍ଷା ପାଇଁ ପୋଲିସ୍ ଗୁଳି ଚଳାଇଥିବା କଥା ସଂପୂର୍ଣ୍ଣ ମିଥ୍ୟା ଅଟେ । ଏହାଦ୍ୱାରା ସେମାନେ ମରିଥିବା ଲୋକ ବିପକ୍ଷରେ ପୋଲିସକୁ ହତ୍ୟା ଉଦ୍ୟମ ଆଇ.ପି.ସି.ର ୩୦୭ ଲଗାଇ ଏହି କେଶ୍ ସହଜରେ ବନ୍ଦ କରିଦେଇ ପାରିବେ । ଏହା ଆଇନ୍‌କୁ ଆଖିଠାର ମାରିବାପରି । ଏମଧ୍ୟରେ ସେମାନେ ଜାତୀୟ ମାନବିକ ଅଧିକାର କମିଶନରଙ୍କ ନିର୍ଦ୍ଦେଶ ଅନୁସାରେ ମାଜିଷ୍ଟ୍ରେଟ୍ ଇନ୍‌କ୍ୱାରି କରି କମିଶନରଙ୍କୁ ରିପୋର୍ଟ ଦେଇ ସାରିଥିବେ । ତାହା କଦାପି ଆଇନ୍‌କୁ ପାଳନ କରାଯାଇଛି ବୋଲି କୁହାଯାଇ ପାରିବ ନାହିଁ । ବରଂ ଜବାନ୍‌ମାନଙ୍କ ବିରୁଦ୍ଧରେ ହତ୍ୟା ମକଦ୍ଦମା ରୁଜୁ କରି କୋର୍ଟରେ ଉପଯୁକ୍ତ ବିଚାର କରାଯାଇ ପାରିଲେ ଯାଇ ଆଇନ୍‌କୁ ସମ୍ମାନ ଦିଆଗଲା ବୋଲି ଜଣାପଡିବ ।

ଦକ୍ଷିଣ ଓଡ଼ିଶାରେ ସରକାରଙ୍କ ତରଫରୁ ଅଧିକରୁ ଅଧିକ ଅର୍ଦ୍ଧ ସାମରିକ ବାହିନୀ ଓ SOGଙ୍କୁ ମୁତୟନ କରାଯିବା ଏକ ଚିନ୍ତାର ବିଷୟ ଅଟେ । ଗଲା ୪ ବର୍ଷ ମଧ୍ୟରେ ଏହି ସରକାରୀ ବାହିନୀ ଦ୍ୱାରା ଖୋଜି ଖୋଜି ମାରିବାର ଅଭିଯାନ ପ୍ରାୟତଃ ଆରମ୍ଭ କରି ଦିଆଯାଇଛି । ପୋଲିସ୍ ବାହିନୀର ଏହି ରଣ କୌଶଳ ସାଧାରଣ ଆଦିବାସୀର ଜଙ୍ଗଲ ମଧ୍ୟକୁ ଯିବାର ଅଧିକାର ଓ ତାର ଜୀବନ ଓ ଜୀବିକାର ଅଧିକାରକୁ ଛଡ଼ାଇ ନେଉଛି । ଏହା ଆମେ କହୁନାହୁଁ ଯେ ମାଓବାଦୀମାନେ କୌଣସି ହିଂସାତ୍ମକ ଘଟଣାରେ ସଂପୃକ୍ତ ନାହାନ୍ତି । ବରଂ ପୋଲିସ୍‌ର ଦାୟିତ୍ୱ ହେଲା ସେମାନଙ୍କୁ କୋର୍ଟର ସାମନା ବା କାନୁନର ସୀମା ମଧ୍ୟକୁ ଆଣିବା । ମାତ୍ର ପୋଲିସ୍‌ନିଜେ ଆଇନ୍‌ର ଉର୍ଦ୍ଧ୍ୱକୁ ଯାଇ ଦୋଷୀର ବିଚାର କରି ମୃତ୍ୟୁଦଣ୍ଡଦେବା କଦାପି ସମ୍ବିଧାନିକ ନୁହେଁ । ଏହାଦ୍ୱାରା ସେମାନେ କେବଳ ନିଜ ବିରୁଦ୍ଧରେ ଉଠିବାକୁ ଥିବା ସନ୍ଦେହକୁ ସମ୍ପୂର୍ଣ୍ଣ ବନ୍ଦ କରିଦେବାକୁ

ଉଦ୍ୟମ କରିଥାଆନ୍ତି । ପୋଲିସର କାର୍ଯ୍ୟକଳାପ ତାହା ଗୋଟିଏ ସରକାରର ନିଜସ୍ୱ ଆଭିମୁଖ୍ୟରୁ ଜଣାପଡିଥାଏ । ଉଭୟ ରାଜ୍ୟ ଓ କେନ୍ଦ୍ରସରକାର ଏଠାରେ ବିଶ୍ୱାସ କରନ୍ତି ଯେ ସେମାନେ ମାଓବାଦୀଙ୍କୁ ମୁଳରୁ ନିପାତ କରିବାକୁ ଅତ୍ୟନ୍ତ ବ୍ୟଗ୍ର, ଅନ୍ୟ ପକ୍ଷରେ କହିବାକୁ ଗଲେ, ଉଭୟ ସରକାର ଯାହା ବାରମ୍ବାର କହୁଛନ୍ତି ଯେ ମାଓବାଦୀ ସମସ୍ୟା ଏକ ରାଜନୈତିକ ସମସ୍ୟା ଅଟେ, ତାହା କେବଳ ଜନସାଧାରଣଙ୍କୁ ବିଭ୍ରାନ୍ତ କରିବାକୁ ଉଦ୍ଦିଷ୍ଟ । ତାହା ଆମେ ଦକ୍ଷିଣ ଓଡ଼ିଶାର ଏହି ବିଶାଳ ଆଦିବାସୀ ଭୂଖଣ୍ଡରେ ଦେଖିବାକୁ ପାଉଛୁ । ସରକାରଙ୍କର ଏହି ନିଷ୍ଠୁର ହତ୍ୟା କରିବା ନୀତି ବନ୍ଦ ହେବା ନିହାତି ଜରୁରୀ । ନହେଲେ ଆଗରୁ ଆହୁରି ବହୁ ଲୋକଙ୍କ ପ୍ରାଣହାନୀ ହେବାର ସମ୍ଭାବନା ରହିଛି ।

### ଆମର ଦାବୀ

୧. ଆମ୍ଭେ ଦାବୀ କରୁଛୁ ଯେ, ଉପରୋକ୍ତ ୩ଟି ଘଟଣାର ଏକ ନିରପେକ୍ଷ ଅନୁସନ୍ଧାନ କରାଯାଇ ଉପଯୁକ୍ତ ଦଣ୍ଡବିଧାନ କରାଯାଉ । ସେମାନଙ୍କର ପ୍ରମୁଖମାନଙ୍କ ବିରୁଦ୍ଧରେ IPC ୩୦୨ ଅନୁସାରେ ହତ୍ୟା ମକଦ୍ଦମା ରୁଜୁ ହେବା ଜରୁରୀ ।

୨. ଆଦିବାସୀଙ୍କର ବହୁ ଲଢ଼େଇ ପରେ ମିଳିଥିବା ଗ୍ରାମ ସଭା ଅଧିକାର ଓ (PE&A) ଓ ଜଙ୍ଗଲ ଅଧିକାର ଆଇନ୍ (FRA) ଆଇନକୁ ସରକାର ପାଳନ କରନ୍ତୁ ।

୩. ମାଓବାଦୀଙ୍କୁ ନିପାତ କରିବାର ଯେଉଁ ରଣକୌଶଳ ସରକାର ଆପଣାଇଛନ୍ତି ସେଥିରୁ ସେ ନିବୃତ୍ତ ରୁହନ୍ତୁ ।

□□

# ଅପରେସନ୍ ଗ୍ରୀନ୍ ହଣ୍ଟର ଖଣି ଏଜେଣ୍ଡା-
# କାଶିପୁର ଓ ନିୟମଗିରି

ସେଦିନ ଥିଲା ଜାନୁଆରୀ ୯,୨୦୧୧ । ଦିନର ଟିଭି ନିଉଜ୍ ବାରମ୍ବାର ବାସଙ୍ଗମାଳୀ (କାଶିପୁର) ଏନ୍‌କାଉଣ୍ଟର ସମ୍ପର୍କରେ ଖବର ଦେଇ ଚାଲିଥିଲା । ସେମାନଙ୍କ ସାମ୍ବାଦିକ ଘଟଣା ସ୍ଥଳକୁ ପହଞ୍ଚିବାର ବହୁ ପୂର୍ବରୁ ପୁଲିସ୍‌ର ତଥ୍ୟକୁ ଆଧାର କରି ସେମାନେ ଖବର ଦେଇ ଚାଲିଥିଲେ । ମିଡ଼ିଆ ବଖାଣୁଥିଲା 'ପୋଲିସକୁ ଏକ ବିରାଟ ସଫଳତା', '୯ ଜଣ ହାର୍ଡ଼କୋର ମାଓବାଦୀ ହତ୍ୟା', 'ଏକ ବିରାଟ ଆକ୍ରମଣ ଯୋଜନାକୁ ପୁଲିସ ବିଫଳ କରିଦେଲା', 'ଗୁପ୍ତ ମିଟିଂ ଚାଲିଥିଲା' ଇତ୍ୟାଦି ଇତ୍ୟାଦି । ପରେ ଖବରକାଗଜ ଓ ଟିଭି ସାମ୍ବାଦିକମାନଙ୍କୁ ଦକ୍ଷିଣ-ପଶ୍ଚିମ ଡିସିପି ସୌମେନ୍ଦ୍ର ପ୍ରିୟଦର୍ଶୀ ଯେଉଁ ତଥ୍ୟ ଦେଲେ ସେଥିଲା, 'ବସୁନ୍ଧରା ଡିଭିଜନର କାଶୀପୁର - ଲାଞ୍ଜିଗଡ଼ଦଳର ୨୦-୩୦ ଜଣ ମାଓବାଦୀ ବାସଙ୍ଗମାଳୀର ଘଞ୍ଚ ଜଙ୍ଗଲରେ ହୁମା ଝରଣା ନିକଟରେ ମିଟିଂ କରୁଥିବା ପୁଲିସକୁ ସୂଚନା ମିଳିଥିଲା । ଆମର ଜବାନକୁ ଏକା ଯିବା ପାଇଁ ନିର୍ଦ୍ଦେଶ ଦିଆଗଲା । ଆମର ଜବାନମାନେ ସେମାନଙ୍କୁ ସରେଣ୍ଡର ପାଇଁ କହିଲା ପରେ ବି ସେମାନେ ନଶୁଣି ପୁଲିସ ଉପରକୁ ଗ୍ରେନେଡ୍ ପକାଇଲେ । ଏହାର ଜବାବରେ ଆମର ଜବାନମାନେ ଗୁଳି କଲେ । ଗୁଳି ବିନିମୟ ପ୍ରାୟ ଘଣ୍ଟାଏ ଧରି ଚାଲିଲା । ଏଥିରେ ଦୁଇଜଣ ବରିଷ୍ଠ ମାଓବାଦୀ ସମେତ ୯ ଜଣଙ୍କ ମୃତ୍ୟୁ ହେଲା ।'

ସେହି ୨୦୧୧ ମସିହାର ମେ' ମାସର ଖରା ସମୟରେ ବାସଙ୍ଗମାଳୀ ଭଳି ଏକ ଅତିବଡ଼ ପାହାଡ଼ ଚଢ଼ିବା ଏତେ ସହଜ ନ ଥିଲା । ଦୀର୍ଘ ତିନିଘଣ୍ଟାର ପାହାଡ଼ ଚଢ଼ା ପରେ ଆମେ ପାହାଡ଼ ଉପରେ ପହଞ୍ଚିଥିଲୁ । ପାହାଡ଼ର ଉପରେ ବାସଙ୍ଗମାଳୀ ପାହାଡ଼ର ନାମ ଅନୁସାରେ ବାସଙ୍ଗମାଳୀ ଗାଁ ଅବସ୍ଥିତ । ପ୍ରାୟ ୪୦ଟି କନ୍ଧ ଆଦିବାସୀ ପରିବାରକୁ ନେଇ ଗାଁଟି । ସେହି ପାହାଡ଼ ଶିଖରୁ ଅଳ୍ପ ତଳକୁ ଖସି ଆସିଲେ ହୁମା

ଝରଣା ଯେଉଁଠୁ ଗ୍ରାମବାସୀ ନିଜ ଦୈନନ୍ଦିନ ଆବଶ୍ୟକତା ପାଇଁ ପାଣି ନେଇଥାନ୍ତି । ସେହି ଝରଣା ନିକଟସ୍ଥ ବିରାଟ ପଥରକୁ ଉହାଡ଼କରି ଦଲମ୍‌ର ସଦସ୍ୟମାନେ କ୍ୟାମ୍ପ କରିଥିଲେ ।

ବାସଙ୍ଗମାଳୀ ଗ୍ରାମବାସୀ ପୁଲିସର ତଥ୍ୟକୁ ସମ୍ପୂର୍ଣ୍ଣ ଭୁଲ ଘୋଷଣା କରନ୍ତି । ସେମାନଙ୍କ ମତ ଥିଲା "ସେଭଳି କୌଣସି ଗୁଳି ବିନିମୟ ହୋଇ ନ ଥିଲା । ପ୍ରକୃତରେ ପ୍ରାୟ ୨୦ ଜଣ ମାଓବାଦୀ ଦଲମ୍‌ର ସଦସ୍ୟ ଜାନୁଆରୀ ୮,୨୦୧୧ ସକାଳେ ଗାଁରେ ଆସି ପହଞ୍ଚିଥିଲେ । ସେମାନଙ୍କ ମଧ୍ୟରୁ ଅଧା ସଦସ୍ୟ ସେଥିରୁ ମହିଳା ଥିଲେ ୨ଜଣ । ମହିଳାଙ୍କ ସମେତ ୮ଜଣଙ୍କ ପାଖରେ ବନ୍ଧୁକ ଥିଲା । ଗାଁରୁ ସେମାନେ ଚାଉଳ ଓ ରୋଷେଇ ଉପକରଣ ନେଇ ଗାଁ ପାଖ ଝରଣା ପାଖକୁ ଯାଇଥିଲେ । ପୁଣି ସନ୍ଧ୍ୟାରେ ସେମାନେ ଗାଁକୁ ଆସି ସାଂସ୍କୃତିକ କାର୍ଯ୍ୟକ୍ରମ କରିବା ସହିତ ଖଣି କମ୍ପାନୀମାନଙ୍କ ବିରୁଦ୍ଧରେ ଗ୍ରାମବାସୀଙ୍କୁ ସଚେତନ କରାଇଥିଲେ । ଏହାପରେ ଚାଲିଯାଇଥିଲେ ।

ବାସଙ୍ଗମାଳୀର ସିରକୁଳି ଗଇଁପଡ଼ା ଗ୍ରାମପଟରୁ ପୁଲିସ୍ ମଧ୍ୟ ରାତ୍ରିରେ ଆସି ତିନିପଟରୁ ଘେରି ଯାଇଥିଲା । ସକାଳ ହେବାର ଯଥେଷ୍ଟ ଆଗରୁ ପୁଲିସ୍ ଗ୍ରେନେଡ଼ ଫିଙ୍ଗିବା ଆରମ୍ଭ କରିଦେଲା । ଭୀଷଣ ଶବ୍ଦରେ ସ୍ତମ୍ଭୀଭୂତ ହୋଇ ଗ୍ରାମବାସୀ କେହି କେହି ଘରର ବାହାରକୁ ଚାଲି ଆସିଥିଲେ ମଧ୍ୟ ସାହାସ କରି ଝରଣା ପାଖକୁ ଯାଇପାରି ନ ଥିଲେ । ପରେ ଦୁଇ ଜଣ ଅସ୍ତ୍ରଧାରୀ ପୋଲିସ ଗାଁକୁ ଆସି ଗାଁର ଯୁବକମାନଙ୍କୁ "ମାଓବାଦୀଙ୍କ ସହିତ ମିଶିଛ", "ତାଙ୍କୁ ଖାଇବାକୁ ଦେଉଛ", "ତୁମକୁ ମଧ୍ୟ ଏନ୍‌କାଉଣ୍ଟର କରିଦେବୁ" ବୋଲି ଧମକ ଦେଇଥିଲେ ଓ ମୃତ ଶରୀରଗୁଡ଼ିକୁ ଉଠାଇବା ପାଇଁ ଝରଣା କୂଳକୁ ଯିବାକୁ ବାଧ୍ୟ କରିଥିଲେ । ନିଜର ଅନିଚ୍ଛା ସତ୍ତ୍ୱେ ପରେ ୧୭ ଜଣ ଗ୍ରାମବାସୀ ୯ଟି ମୃତ ଶରୀରକୁ ଝରଣା ନିକଟରୁ ପାହାଡ଼ ଉପରକୁ ଆଣିବା ଓ ଟ୍ରାକ୍ଟରରେ ଲଦି ରାୟଗଡ଼ା ପଠାଇବାରେ ବ୍ୟବହୃତ ହୋଇଥିଲେ । ସେଠାରୁ ୯ ତାରିଖ ସନ୍ଧ୍ୟାରେ ସମସ୍ତ ମୃତ ଶରୀରକୁ ପୋଷ୍ଟମର୍ଟମ ପାଇଁ ରାୟଗଡ଼ା ଅଣାଯାଇଥିଲା ।

ଆମେ ଯେତେବେଳେ ରାୟଗଡ଼ା ଠାରେ ପୁଲିସ୍ ଅନୁସନ୍ଧାନକାରୀ ଦଳର

ମୁଖ୍ୟ ଶ୍ରୀଯୁକ୍ତ ବି.ଆର. ଭି. ରାଓ, ଏସ୍.ଡି.ପି.ଓ ପୁଲିସର ଫାୟାରର କାରଣ ଓ ରିପୋର୍ଟ ସମ୍ପର୍କରେ ପଚାରିଥିଲୁ, ଆମକୁ ସେହି ଗତାନୁଗତିକ ଉତ୍ତର ମିଳିଥିଲା । 'କାଶିପୁର ତହସିଲଦାରଙ୍କ ମାଧ୍ୟମରେ ଘଟଣାର ତଦନ୍ତ କରି ସମଗ୍ର ତଥ୍ୟ 'ଜାତୀୟ ମାନବିକ ଅଧିକାର କମିଶନ୍'ଙ୍କୁ ଦେଇଦିଆଯାଇଛି । ଏ ସଂକ୍ରାନ୍ତରେ ପୁଲିସ ପକ୍ଷରୁ କାଶିପୁର ଥାନାରେ କେଶ୍ ନମ୍ବର ୨/୧୧ (US ୧୨୧,୧୨୧ (A), ୩୦୭ IPC, Section ୪ ୯ ୫ of Explosive substance Act Section 10, 13, 15, 18, 18 (A) of UAPA (Unlawful Activities Prevction Act) ଓ Section 27, 25 and 27 of Arms Act) ରେ ମୃତ ମାଓବାଦୀ ଓ ଆହୁରି ଅନେକଙ୍କ ନାମରେ ରୁଜୁ କରାଯାଇଛି । ମାତ୍ର ଶ୍ରୀଯୁକ୍ତ ରାଓଙ୍କ ଠାରୁ ଆମେ ଜାଣିବାକୁ ପାଇଥିଲୁ ଯେ ପୁଲିସ ଗୁଳିରେ ୯ ଜଣ 'ମାଓବାଦୀ' ମୃତ୍ୟୁବରଣ କରିଥିଲେ ମଧ୍ୟ ପୁଲିସ୍ ବିପକ୍ଷରେ IPC ର ଧାରା ୩୦୨ (ହତ୍ୟା) ଦଫା ଲାଗିନାହିଁ । ଏହାଦ୍ୱାରା ସରକାରଙ୍କର ମାଓବାଦୀ ଦମନ ଅଭିଯାନର ଉଦ୍ଦେଶ୍ୟ ଉପରେ ସନ୍ଦେହ ଆସୁଛି । କାରଣ ପୁଲିସର କାର୍ଯ୍ୟ କଦାପି ସ୍ୱତନ୍ତ୍ର ହୋଇନଥାଏ । ଏହାପଛରେ ସରକାରଙ୍କ ନିର୍ଦ୍ଦେଶଟି ସର୍ବଦା କାମ କରୁଥାଏ ।

ଓଡ଼ିଶାରେ ଡିସେମ୍ବର ୨୦୧୦ରୁ ଜାନୁଆରୀ ୨୦୧୧ ମଧ୍ୟରେ ତିନୋଟି ସ୍ଥାନରେ ଅଳ୍ପଦିନ ବ୍ୟବଧାନରେ ଏହିପରି ଏନ୍‌କାଉଣ୍ଟର ହୋଇଥିଲା । ତାହା ମୁଖ୍ୟତଃ ଖଣି ବିରୋଧି ଆନ୍ଦୋଳନ ଚାଲିଥିବା ସ୍ଥାନମାନଙ୍କରେ ଥିଲା । ତାହାଥିଲା ମାଓବାଦୀ ସନ୍ଦେହରେ ମୃତ୍ୟୁବରଣ କରିଥିବା ସେହି ୨୫ ଯୁବକ ଓ ଯୁବତୀଙ୍କ ମଧ୍ୟରୁ ଅଧିକାଂଶ ଆଦିବାସୀ ଥିଲେ । ବରଗଡ଼ର ପାଇକମାଳ (ଡିସେମ୍ବର ୨୮,୨୦୧୧), ଯାଜପୁର ଜିଲ୍ଲା କଳିଙ୍ଗନଗର ନିକଟସ୍ଥ ଟମ୍‌କା (ଜାନୁଆରୀ ୧,୨୦୧୦) ଓ କାଶୀପୁରର ବାସଙ୍ଗମାଳୀ (ଜାନୁଆରୀ ୯, ୨୦୧୦) ସେଥିରୁ ବାସଙ୍ଗମାଳୀ ଏନ୍‌କାଉଣ୍ଟରରେ ମୃତ ଯୁବକ ଯୁବତୀଙ୍କ ଭିତରୁ ଅଧିକାଂଶ କାଶୀପୁର ଓ କାଶୀପୁରର ବାସଙ୍ଗମାଳୀ ଆନ୍ଦୋଳନରେ ସକ୍ରୀୟ ଗାଁମାନଙ୍କ ଠାରୁ ଥିଲେ, ଯେଉଁମାନଙ୍କ ବାପା ମା' ବା ପରିବାରର ଅନ୍ୟ କେହି ଆନ୍ଦୋଳନର ନେତୃତ୍ୱ ମଧ୍ୟ ନେଇଥିଲେ । ଉଦାରବାଦୀ

ଅର୍ଥନୀତି ପରର ବିକାଶ ନାମରେ ଯେଉଁ ସବୁ ବୃହତ୍ତ ଖଣି କମ୍ପାନୀମାନେ ଆସିଛନ୍ତି ବା ଆସିବା ପାଇଁ ଚୁକ୍ତି କରିଛନ୍ତି ସେମାନଙ୍କ ପୃଷ୍ଠା ଓଲଟାଇଲେ ଆମକୁ ଦେଖିବାକୁ ମିଳେ ଏନକାଉଣ୍ଟର ହତ୍ୟା, ଅନ୍ଧାଧୁନିଆ ଗୁଳି, ଶାରିରୀକ ନିର୍ଯାତନା, ହାଜତ ମୃତ୍ୟୁ ଓ ମିଥ୍ୟା ଆରୋପରେ ଆରେଷ୍ଟ । ସମ୍ଭବତଃ କେନ୍ଦ୍ର ସରକାର ଓ ଓଡ଼ିଶା ସରକାରଙ୍କ ମାଓବାଦୀ ବିରୋଧୀ ଅଭିଯାନର ଏହା ମୂଳ ଉଦ୍ଦେଶ୍ୟ ।

ଆମେ ଭେଟିଥିବା କାଶୀପୁର ଆନ୍ଦୋଳନର ଜଣେ ପ୍ରମୁଖ ଆଦିବାସୀ ନେତା ଶିରିଗୁଡ଼ା ଗ୍ରାମର ମନୋହର ଝୋଡ଼ିଆ କୁହନ୍ତି, "ଏମାନେ ତ ଜନ୍ମ ହୋଇନଥିଲେ ଆମେ ଆଗରୁ ଆନ୍ଦୋଳନ କରୁଥିଲୁ । ପ୍ରଶାସନକୁ, ସରକାରଙ୍କୁ ବିରୋଧ କରି ଆସୁଥିଲୁ । ସେଥିରେ ପିଲାମାନେ ଜାଣୁଥିଲେ ଆମେ ମାଡ଼ ବି ଖାଉଥିଲୁ, ଜେଲ ବି ଯାଉଥିଲୁ । ଏସବୁ କହି ସିନା ପାରୁ ନ ଥିଲେ, ସେମାନେ ଦେଖୁ ତ ଥିଲେ । ସେଥିପାଇଁ ବାହାର କରି ରକ୍ତ ଦେବା ପାଇଁ ଚିନ୍ତା କଲେ । ଆମର ସଂଗଠନ ଯଦି ଜିତିବାର ସ୍ଥିତିରେ ରହିଥାନ୍ତା ତେବେ ଏକ୍ଷତି ହୋଇନଥାନ୍ତା ।" ମନୋହର ନିଜର ଝିଅ ମାମିକୁ ବାସଙ୍ଗମାଳୀ ଏନ୍‌କାଉଣ୍ଟରରେ ହରାଇଥାନ୍ତି । ସେ ନିଜେ ବି ପୁଲିସର ସନ୍ଦେହ ତାଲିକାରେ ଅଛନ୍ତି । ପୁଲିସ ନିୟମିତ ଗାଁକୁ ଯାଇ ତାଙ୍କ ବିଷୟରେ ପଚରାଉଚରା କରୁଛି । ସେହପରି ଆମେ ଭେଟିଥିବା ବାରିଗାଁର ମୃତ ସେକ୍ ମଣିଆକ୍କାର ମା' ଆଦାଇ ମଣିଆକ୍କା ନିଜ ଝିଅ ସହିତ ମାଓବାଦୀ ପାଟିରେ ଯୋଗଦେବା ବିରୋଧରେ ଝିଅ ସହିତ ହୋଇଥିବା ଯୁକ୍ତିକୁ ମନେପକାଇ କୁହନ୍ତି "ଝିଅକୁ ପଚାରିଥିଲି । ସେ କହିଲା 'ଚାଲି ତ ଗଲି' । ଆହୁରି କିଛି ଚିନ୍ତା କରିବାର ନାହିଁ । ମଲେ ମରିବି ବଞ୍ଚିଲେ ବଞ୍ଚିବି । ମୁଁ ପାର୍ଟିକୁ ଛାଡ଼ିବି ନାହିଁ । ମୋର ଗାଁ ପାଇଁ, ମୋର ଜମି ପାଇଁ ମଲେ ମରିବି ଓ ପରେ ମୋତେ ନ କହି ଗାଁ ଛାଡ଼ି ପଳାଇଲା ।" ଗାଁ ଛାଡ଼ିବାର କିଛି ମାସ ପରେ ଉଭୟ ମାମି ଝୋଡ଼ିଆ (୧୪) ଓ ସେକ ମଣିଆକ୍କା (୧୮) ବାସଙ୍ଗମାଳୀ ଠାରେ ପୁଲିସ୍ ଗୁଳିରେ ମୃତ୍ୟୁବରଣ କରିଛନ୍ତି । ତାଙ୍କ ସହିତ ବାରିଗାଁର ମୁଲକ ମଣିଆକ୍କା (୧୬) ଓ ପୁଲକ ମଣିଆକ୍କା (୧୪) ମଧ୍ୟ ମୃତ୍ୟୁବରଣ କରିଛନ୍ତି ।

ଆମେ ଏଠାରେ କଦାପି କହୁ ନାହୁଁ ଯେ ବାସଙ୍ଗମାଳୀରେ ମୃତ ଯୁବକା/ଯୁବତୀ

ମାଓବାଦୀ ନ ଥିଲେ । ସେମାନେ ହୁଏ ମାଓବାଦୀ ବିଚାରକୁ ଆପଣେଇଥିଲେ । ମାତ୍ର ପୁଲିସର ଯେଉଁ ଦାୟୀତ୍ୱ, ଯେ ମାଓବାଦୀ ବିଚାରକୁ ଆପଣାଇଥିବା ବ୍ୟକ୍ତି ବିଶେଷକୁ ନୁହେଁ ବରଂ କୌଣସି ଦୋଷାବହ କାର୍ଯ୍ୟ କରୁଥିବା ଅଥବା କରିବା ପାଇଁ ଯୋଜନା କରିଥିବା ବ୍ୟକ୍ତିବିଶେଷକୁ ସେଥିରୁ ନିବୃତ୍ତ କରାଇବା ଓ ବିଚାର ବିଭାଗ ସାମ୍ନାରେ ହାଜର କରାଇବା ପରି ଦାୟୀତ୍ୱ ପୂର୍ଣ୍ଣ କାର୍ଯ୍ୟ ପୁଲିସ୍ କରିନାହିଁ । ବରଂ ଏକ୍ଷେତ୍ରରେ ପୁଲିସ୍ ନିଜେ ବି ବିଚାରକ ସାଜି ନିଜେବି ମୃତ୍ୟୁଦଣ୍ଡ ଦେବାପରି ଗୁରୁତର କାର୍ଯ୍ୟ କରିଛି । ପାରିପାର୍ଶ୍ୱିକ ପରିସ୍ଥିତି ଓ ଗ୍ରାମବାସୀଙ୍କ ମତାମତ ନେବା ପରେ ଆମର ହୃଦବୋଧ ହେଇଛି ଯେ ଏହା କୌଣସି ଦୃଷ୍ଟିରୁ ଉଭୟ ପଟରୁ ଗୁଳିଚାଳନା ନ ଥିଲା । ଏହା ପୁଲିସ ତରଫରୁ ଏକ ପାଖିଆ ଗୁଳି ଚାଳନା ଥିଲା ଯାହାକି ପ୍ରାୟ ଏଭଳି କ୍ଷେତ୍ରରେ ହୋଇଥାଏ । ପୁଲିସ ସାମାନ୍ୟ ଧୈର୍ଯ୍ୟ ଦେଖାଇଥିଲେ, ଯାହାକି ସେମାନେ ନିଜର ସୁବିଧାସ୍ଥିତି ହେତୁ କରିପାରିଥାନ୍ତେ, ଅନେକ ଯୁବକ ଓ ଯୁବତୀଙ୍କ ଜୀବନ ବଞ୍ଚିଯାଇଥାନ୍ତା । ମାତ୍ର ପୁଲିସର ହତ୍ୟାକାରୀ ଅଭିଯାନ ରକ୍ତରଞ୍ଜିତ ବିକାଶ ଇତିହାସରେ ଆଉ ଏକ ଫର୍ଦ୍ଦ ଯୋଡ଼ା ହେଲା ।

ଆଜିର ବିକାଶ ପଦ୍ଧତିକୁ ଦେଖିଲେ ପ୍ରତ୍ୟେକ ସୋପାନରେ ମାନବିକ ଅଧିକାର ଉଲ୍ଲଂଘନର ଜ୍ୱଳନ୍ତ ପ୍ରମାଣ ମିଳେ । ଦେଶର ସମ୍ବିଧାନ ଓ ପଞ୍ଚମ ଅନୁଚ୍ଛେଦକୁ ଖୋଲା ଉଲ୍ଲଂଘନ କରି ଲୋକେ ନିର୍ଭର କରି ରହିଥିବା ପ୍ରାକୃତିକ ସମ୍ପଦରୁ ସ୍ଥାନୀୟ ଚାଷୀ, ଆଦିବାସୀ ଓ ଦଳିତଙ୍କୁ ଜବରଦସ୍ତି ଉଚ୍ଛେଦ କରିବା, କୌଣସି ବିସ୍ଥାପିତଙ୍କୁ ଆଜି ପର୍ଯ୍ୟନ୍ତ ଉପଯୁକ୍ତ ଭାବରେ ଥଇଥାନ ନ କରିପାରିବା, ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିର ନିର୍ଦ୍ଦେଶ କ୍ରମେ ପ୍ରାକୃତିକ ସମ୍ପଦକୁ ପୁଞ୍ଜିର ବିକାଶ ପାଇଁ ଛାଡ଼ିଦେବା, ଦେଶ ମଧ୍ୟରେ ଧନୀ ଓ ଗରିବର ତାରତମ୍ୟ ବଢ଼ାଇବା, ଅଳ୍ପକିଛି ଲୋକଙ୍କ ହାତରେ ଧନ ଠୁଳ ହେବା ବେଳକୁ ବେଶ କିଛି ଗରିବ ସୃଷ୍ଟି କରିଚାଲିବା ଯେଉଁଥିପାଇଁକି ବେରୋଜଗାରୀ, ଦାଦନ, ଚାଷୀ ଆତ୍ମହତ୍ୟା, ପ୍ରଦୁଷଣ ପରି ଅର୍ଥନୈତିକ ବ୍ୟାଧି ସଂକ୍ରମିତ ହୋଇଚାଲିବାହିଁ ପ୍ରଚଳିତ ବିକାଶ ପଦ୍ଧତିର ଅଂଶବିଶେଷ । ବହୁ ସମୟରେ ମାନବିକ ଅଧିକାର ଆନ୍ଦୋଳନ ମଧ୍ୟରେ ସ୍ଥାନୀୟ ଚାଷୀ ଆଦିବାସୀ ଦଳିତଙ୍କ

ଆନ୍ଦୋଳନକୁ ଯଥାର୍ଥ ମନେକରି ବାରମ୍ବାର ପ୍ରଚଳିତ ବିକାଶ ପଦ୍ଧତି ସମ୍ପର୍କରେ ପ୍ରଶ୍ନ କରାଯାଇଛି ।

"ନିଜେ ସରକାର ଯୋଜନା କଲେ, ନିଜେ ରାଜା ନିଜେ ମନ୍ତ୍ରୀ" । ଦଳିତ ଆଦିବାସୀ ଲୋକେ ନିଜର ବଞ୍ଚିବାର ଜୀବିକା ପାଇଁ ଲଢୁଛନ୍ତି । ସେକଥା ସରକାର ବୁଝିଲେ ନାହିଁ । ଆମେ ପ୍ରକୃତରେ ଜାଣୁ ଯେ ଚିରସ୍ରୋତା ଝରଣା ଯେତେବେଳେ ଝରୁଛି ଏ ଲୋପ ପାଇଗଲା ତେବେ ଏହା ସମସ୍ତଙ୍କ ପାଇଁ ଅସୁବିଧା, କେବଳ ଚାଷୀ ମୁଲିଆ ନୁହେଁ ବୁଦ୍ଧିଜୀବୀ, ନେତା, ମନ୍ତ୍ରୀ ସମସ୍ତଙ୍କ ପାଇଁ । ଆଜି ଠିକ୍‌ରେ ବର୍ଷା ହେଉ ନାହିଁ । କାମ ପାଇଁ ହେଉନାହିଁ । ମନୋହର ଝୋଡ଼ିଆ ଏହିକଥା ନିଜର ସଂଗଠନ 'ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ' ଦ୍ୱାରା ଚାଲିଥିବା ଖଣିବିରୋଧୀ ଆନ୍ଦୋଳନର ଯଥାର୍ଥତା ସମ୍ପର୍କରେ କୁହନ୍ତି । ଏହି ପରିଷଦ ପ୍ରାୟ ୧୫ ବର୍ଷ ହେଲାଣି କାଶୀପୁର ଓ ଲକ୍ଷ୍ମୀପୁର ବ୍ଲକ୍‌ର ହଜାର ହଜାର ଆଦିବାସୀ ଓ ଦଳିତଙ୍କ ନିଜସ୍ୱ ସଂଗଠନ ଭାବରେ ଉତ୍କଳ ଆଲୁମିନା - ବିରଲା କମ୍ପାନୀକୁ ବିରୋଧ କରିଆସୁଛି । ୧୯୯୩ରେ ଚୁକ୍ତି ହୋଇଥିବା ଏହି କମ୍ପାନୀରେ ଅନ୍ୟତମ ସଦସ୍ୟ ଭାବରେ ଭାରତର ଟାଟା, ନରୱେର ହାଇଡ୍ରୋ ଓ କାନାଡ଼ାର ଆଲକାନ କମ୍ପାନୀ ଥିଲେ । ଆନ୍ତର୍ଜାତୀୟ ବଜାରରେ ଆଲୁମିନିୟମ୍‌ର ଚାହିଦା (ଏହା ବକ୍‌ସାଇଟ୍‌ରୁ ବିଶୋଧନ ଓ ରାସାୟନିକ ପ୍ରକ୍ରିୟାକରଣ ମାଧ୍ୟମରେ ତିଆରି ହୋଇଥାଏ) ଥିବା ହେତୁ ଉକ୍ତ କମ୍ପାନୀମାନେ କାଶୀପୁରରେ ଥିବା ବାଫଲାମାଳୀ ଉପରେ ଆଖି ପକାଇଥିଲେ । ପରେ ପରେ ଲାର୍ସନ ଏଣ୍ଡ ଟ୍ୟୁବ୍ରୋ ଓ ବେଦାନ୍ତ ପରି କମ୍ପାନୀମାନେ ମଧ୍ୟ ଅଞ୍ଚଳକୁ ବିଭିନ୍ନ ଚୁକ୍ତି ମାଧ୍ୟରେ ଆସିଛନ୍ତି ।

ଯାହା କମ୍ପାନୀ ଓ ସରକାରଙ୍କ ପାଇଁ ଦ୍ରୁତ ଅଭିବୃଦ୍ଧି ତାହା ସ୍ଥାନୀୟ ଆଦିବାସୀ ଓ ଦଳିତଙ୍କ ପାଇଁ ଜୀବନ ଓ ଜୀବିକାର ପ୍ରଶ୍ନ । ବକ୍‌ସାଇଟ୍ ହେତୁ କାଶୀପୁର ଅଞ୍ଚଳର ଝରଣା ଚିରସ୍ରୋତା - ସେମାନଙ୍କ ପାଇଁ ଜୀବନରେଖା ସଦୃଶ । ତେଣୁ ସେମାନେ ଏହି ସବୁ କମ୍ପାନୀମାନଙ୍କୁ ବିରୋଧ କରିଆସୁଥିଲେ । ଏସବୁ ଅଞ୍ଚଳ ସମ୍ବିଧାନର ପଞ୍ଚମ ଅନୁଚ୍ଛେଦରେ ଆସୁଥିବା ହେତୁ ଗ୍ରାମସଭା ନିଷ୍ପତ୍ତି ଗୁରୁତ୍ୱପୂର୍ଣ୍ଣ ହୋଇଥାଏ । ଏ ଅଞ୍ଚଳର ସମସ୍ତ ଗ୍ରାମସଭା କମ୍ପାନୀ ବିପକ୍ଷରେ ପ୍ରସ୍ତାବ ଦେଇଛନ୍ତି । ତଥାପି ଆନ୍ଦୋଳନକୁ

ଦମନ କରିବାକୁ ଯାଇ ପୁଲିସ୍ ଦ୍ୱାରା ମାଇଙ୍କଚ ଠାରେ ଡିସେମ୍ବର ୧୬,୨୦୦୦ରେ ଗୁଳିକାଣ୍ଡ ହୋଇଥିଲା ଯେଉଁଥିରେ କି ତିନିଜଣ ଆଦିବାସୀ ମୃତ୍ୟୁବରଣ କରିଥିଲେ ଓ ସାତଜଣ ଆହତ ହୋଇଥିଲେ । ଏହାପରେ ୨୦୦୫ ମସିହାରେ ପୁନଃ ଦମନ ଆରମ୍ଭ ହୋଇଥିଲା ଓ ସଶସ୍ତ୍ର ପୁଲିସର ସହାୟତାରେ କମ୍ପାନୀ ଏହାର ପ୍ଲାଣ୍ଟ ବସାଇବା କାମ ଆରମ୍ଭ କରିଥିଲା । ଏ ସମୟରେ (୨୦୦୫) ଆସିଥିବା ବିଧାନସଭା କମିଟି ମଧ୍ୟ ପରିବେଶ ଅନୁମତି ପତ୍ର ଓ ଖଣି ଅନୁମତି ପତ୍ର ନ ଥାଇ କମ୍ପାନୀ କାମ କରିବାରେ ଆଶ୍ଚର୍ଯ୍ୟ ଅନୁଭବ କରିଥିଲେ । ମାତ୍ର ସେ କମିଟିର ରିପୋର୍ଟ କୌଣସି ପ୍ରକାରରେ କମ୍ପାନୀକୁ କାମ ବଂଦ କରିବାରେ ବାଧ୍ୟ କରିପାରିଲା ନାହିଁ । ଲୋକଙ୍କ ବିରୋଧ ସତ୍ତ୍ୱେ ଆଦିତ୍ୟ ବିରଳା - ଉତ୍କଳ ଆଲୁମିନା କମ୍ପାନୀ ଏହାର କାମ କରିଚାଲିଲା ।

କାଶୀପୁର ଆନ୍ଦୋଳନର ପ୍ରମୁଖ ସଂଗଠନ 'ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ' ତରଫରୁ ଜାତୀୟ ମାନବିକ ଅଧିକାର କମିଶନ୍‌କୁ (ତାରିଖ ଜୁଲାଇ ୨୧,୨୦୦୫) ଦିଆଯାଇଥିବା ଚିଠିରେ ଉଲ୍ଲେଖ କରାଯାଇଛି, '୨୦୦୫-୦୬ ମଧ୍ୟରେ ପୁଲିସ ବହୁବାର ଲାଠିଚାର୍ଜ କରିବା ସହିତ ଅନ୍ଧାଧୁନିଆ ଆରେଷ୍ଟ କରିଚାଲିଲା । ଆମର କର୍ମୀଙ୍କୁ ଗାଁରୁ, ହାଟରୁ, ନଦୀ କଡ଼ରୁ, କାହାକୁ ଭୋରରୁ ଓ ପୁଣି କାହାକୁ ମଧ୍ୟ ରାତ୍ରିରୁ ଉଠାଇ ନେଉଛି । ଏ ଭିତରେ ୬୨ ଜଣ କର୍ମୀଙ୍କୁ ଆରେଷ୍ଟ କରିସାରିଲାଣି । ଆମ୍ଭମାନଙ୍କ ବିରୁଦ୍ଧରେ ପୋଡ଼ା ଜଳା, ହତ୍ୟା ଉଦ୍ୟମ ପରି ମିଥ୍ୟା ଆରୋପ ଲଗାଯାଇ କେଶ୍ କରାଯାଉଛି । ରାୟଗଡ଼ା ଜିଲ୍ଲାପାଳଙ୍କ ଅଫିସ, ଏବେ କମ୍ପାନୀର ଅଫିସ ପାଲଟି ଯାଇଛି । ଟିକିରୀ ଥାନା ଅଧିକାରୀ କମ୍ପାନୀର କର୍ମଚାରୀ ପରି ବ୍ୟବହାର କରୁଛନ୍ତି' । ସେହି ସମୟ ଥିଲା କାଶୀପୁର ଆନ୍ଦୋଳନ ପାଇଁ ସବୁଠାରୁ ଦୁର୍ଦ୍ଦିନ ସମୟ ।

କାଶୀପୁରର ଅନତିଦୂରରେ ଅବସ୍ଥିତ କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ସହରକୁ ଲାଗି ବେଦାନ୍ତ କମ୍ପାନୀ ନିଜର ଆଲୁମିନା ପ୍ଲାଣ୍ଟ ବସାଇବା ସହିତ ନିୟମଗିରି ପାହାଡ଼ରୁ ବକ୍‌ସାଇଟ୍ ଖଣି ଖୋଳିବା ପାଇଁ ରାଜ୍ୟସରକାରଙ୍କ ସହିତ ଲିଖିତ ଚୁକ୍ତି (୨୦୦୩) କରିଥିଲା । ରାଜ୍ୟ ସରକାରଙ୍କ ସହିତ ଲିଖିତ ଚୁକ୍ତି ବ୍ୟତୀତ ଯେଉଁ ଅଲିଖିତ ବୁଝାମଣା ଏସବୁ କ୍ଷେତ୍ରରେ ହୋଇଥାଏ ତାହା ହେଲା ଚବିଶ ଘଣ୍ଟା ପୁଲିସ ପ୍ରହରା ଓ ସ୍ଥିତ

ଆଇନର ଖୋଲା ଉଲ୍ଲଂଘନ । ବେଦାନ୍ତ କମ୍ପାନୀ ସମ୍ପର୍କରେ ପିୟୁଡ଼ିଆର ରିପୋର୍ଟ (୨୦୦୫) କୁହେ 'ବେଦାନ୍ତ କମ୍ପାନୀ ଭାରତ ସରକାରଙ୍କ ପରିବେଶ ଓ ଜଙ୍ଗଲ ସୁରକ୍ଷା ମନ୍ତ୍ରଣାଳୟ ଅନ୍ତର୍ଗତ ପରିବେଶ ସୁରକ୍ଷା ଆଇନ୍ ୧୯୮୬ ଅନୁଯାୟୀ କେବଳ ଆଲୁମିନା (ବିଶୋଧନଗାର) ପ୍ଲାଣ୍ଟର ପରିବେଶ ଅନୁମିତ ନିମନ୍ତେ ଆବେଦନ କରିଥିଲା । କିନ୍ତୁ ଏହା ନିୟମଗିରି ପାହାଡ଼ ଠାରେ ଅବସ୍ଥିତ ବକ୍ସାଇଟ୍ ଖଣି ପାଇଁ କୌଣସି ଅନୁମତି ପତ୍ର ଜଙ୍ଗଲ ସୁରକ୍ଷା ଆଇନ୍ ୧୯୮୦ ଅନୁଯାୟୀ ଆବେଦନ କରିନାହିଁ ଓ ଜଙ୍ଗଲ ଅନୁମତି ମିଳିବା ଆଗରୁ କମ୍ପାନୀ ଆଲୁମିନା ପ୍ଲାଣ୍ଟର ନିର୍ମାଣ ଆରମ୍ଭ କରିଦେଇଛି । ଅଥଚ ପରିବେଶ ଓ ଜଙ୍ଗଲ ସୁରକ୍ଷା ମନ୍ତ୍ରଣାଳୟର ହ୍ୟାଣ୍ଡବୁକ୍‌ରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ, କୌଣସି ଯୋଜନାକୁ ବିଭକ୍ତ କରି ଅନୁମତି ପାଇଁ ଦରଖାସ୍ତ କରାଯାଇପାରିବ ନାହିଁ । ପୁଣି ବେଦାନ୍ତ କମ୍ପାନୀ ୫୮ ହେକ୍ଟର ଜଙ୍ଗଲ ଜମିକୁ ଅଣଜଙ୍ଗଲ ଜମିରେ ପରିବର୍ତ୍ତନ ନ କରି ଆଲୁମିନା ପ୍ଲାଣ୍ଟର ନିର୍ମାଣ ଆଗ କରି ନେଇଥିଲେ ମଧ୍ୟ ଓଡ଼ିଶା ସରକାର କମ୍ପାନୀକୁ ଦଣ୍ଡିତ କରିବା ବଦଳରେ ପରିବେଶ ସଂକ୍ରାନ୍ତୀୟ କାଗଜପତ୍ର କେନ୍ଦ୍ର ସରକାରଙ୍କୁ ପଠାଇଥିଲେ ।' ସରକାରୀ ଅଫିସର ଓ ରାଜନୈତିକ ନେତାଙ୍କ ଜ୍ଞାତରେ କମ୍ପାନୀ ଅଗ୍ରସର ହେବା ଆଇନର ଉଲ୍ଲଂଘନ ଥିଲା । ଏହା ସ୍ଥାନୀୟ ଆଦିବାସୀଙ୍କ ପାଇଁ କମ୍ପାନୀ ଓ ସରକାର ମଧ୍ୟରେ କୌଣସି ଫରକ ରଖି ନଥିଲା । ଲୋକଙ୍କ ଅଭିଯୋଗର ସମସ୍ତ ରାସ୍ତା କାଶୀପୁର ଓ ଲାଞ୍ଜିଗଡ଼ କ୍ଷେତ୍ରରେ ଯେମିତି ବନ୍ଦ ହୋଇଯାଇଥିଲା ।

ସ୍ଥାନୀୟ ଜନସାଧାରଣ, ସାମାଜିକ କର୍ମୀ ଓ ସାମ୍ବାଦିକମାନଙ୍କ ଠାରୁ ଆମେ ଜାଣିଲୁ ଯେ ୨୦୦୯ ମସିହା ଠାରୁ ସିପିଆଇ (ମାଓବାଦୀ) ପାର୍ଟିର ବଂଶଧାରା ଡିଭିଜନର କାଶୀପୁର-ଲାଞ୍ଜିଗଡ଼ ଦଳମର ୨୦-୩୦ ଜଣ ସଦସ୍ୟ ଏସବୁ ଅଞ୍ଚଳରେ ମୁଖ୍ୟତଃ ସାଂସ୍କୃତିକ କାର୍ଯ୍ୟକ୍ରମ ଦ୍ୱାରା ଲୋକଙ୍କୁ ଖଣି କମ୍ପାନୀ ଓ ସରକାରଙ୍କ ବିରୁଦ୍ଧରେ 'ସଚେତନ' କରାଉଥିଲେ । ଏଥିରେ କ୍ୟାଡ଼ର ମାଓବାଦୀ ବ୍ୟତୀତ କାଶୀପୁର ଓ ଲାଞ୍ଜିଗଡ଼ର ବେଶ୍ କିଛି ଯୁବକ ଓ ଯୁବତୀ ଯୋଗ ଦେଇଥିଲେ । ସେମାନେ ଖଣିବିରୋଧୀ ଆନ୍ଦୋଳନରେ ସକ୍ରୀୟ ଥିବା ଗ୍ରାମମାନଙ୍କରୁ ଥିଲେ । ମନୋହର

ଝୋଡ଼ିଆଙ୍କ ଝିଅ ମାମା ଝୋଡ଼ିଆ ପରି ଆଉ କେତେକ ଯୁବକ ଯୁବତୀ ମଧ୍ୟ ଥିଲେ ଯେଉଁମାନଙ୍କ ବାପା ମା' ବା ପରିବାରର ଅନ୍ୟ କେହି ପୁଲିସ ଦ୍ୱାରା ଜେଲ ଯାଇଛନ୍ତି ଅଥବା ଆରେଷ୍ଟ ହୋଇଛନ୍ତି । ସେହି ଆନ୍ଦୋଳନର ପ୍ରମୁଖ ନେତା ବାରିଗାଁର ବୁନ୍‌କା ମିଣିଆକ୍କା (୬୦) କୁହନ୍ତି "ଆମ୍ଭେମାନେ କ'ଣ ଆଉ କରିବୁ ? ଆମ୍ଭମାନଙ୍କ କଥା ସେମାନେ କେହି ଶୁଣୁନାହାନ୍ତି ଓ ଆଉ କୌଣସି ରାସ୍ତା ବଞ୍ଚିକରି ନାହିଁ । ଆମ୍ଭେମାନେ ତ ଶାନ୍ତିପୂର୍ଣ୍ଣ ଉପାୟରେ ଲଢ଼େଇ କରୁଥିଲୁ । କିନ୍ତୁ ସରକାର, ପୁଲିସ ଓ ପ୍ରଶାସନ ତାହାକୁ ଭାଙ୍ଗିଦେବାରେ ସମର୍ଥ ହେଲେ । ଆମ ବିରୁଦ୍ଧରେ ମିଥ୍ୟା ପ୍ରଚାର କଲେ । ଏଥିରେ ଯୁବକ ଯୁବତୀମାନେ ନିଜକୁ ହାରିଯିବା ଅନୁଭବ କଲେ ଓ ଆମ୍ଭେମାନେ ମଧ୍ୟ ଠିକ୍ ଅଛି ଭାବିଲୁ । ଏଭଳି ସ୍ଥିତିରେ ସେମାନେ ମାଓବାଦୀରେ ଯୋଗ ଦେବାକୁ ଉପଯୁକ୍ତ ମଣିଲେ ।" ବୁଲ୍‌କା ମିଣିଆକ୍କାକୁ ତାଙ୍କ ଗ୍ରାମରୁ ପୁଲିସ ଡିସେମ୍ବର ୨୦୦୪ରେ ଉଠାଇଥିଲା । ପ୍ରାୟ ୮ମାସ ଜେଲ୍‌ରେ ରହିବା ପରେ ସେ ଜାମିନ୍‌ରେ ମୁକୁଳିଥିଲେ । ନିଜର ଆରେଷ୍ଟ ସମ୍ପର୍କରେ ସେ ଯାହା କୁହନ୍ତି ସେଥିରେ ପୁଲିସ ଦମନର ପ୍ରକୃତ ଉଦ୍ଦେଶ୍ୟ ଧରାପକେଇଦିଏ । "ଟିକିରି ଥାନାବାଲା ମୋତେ ଘରୁ ଆସି ଉଠାଇନେଲେ । ପରେ ମୋତେ ସେମାନେ ଆନ୍ଦୋଳନ ଛାଡ଼ିଦେବା ପାଇଁ ଟଙ୍କା ଯାଚିଲେ । ନେଇଯାଇଥିଲେ ଛାଡ଼ିଦେଇଥାନ୍ତେ କି କ'ଣ ମନାକରିବାରୁ ଜେଲ୍ ପଠାଇଦେଲେ ।"

ଏବେବି ପୁଲିସ୍ ଓ ଅର୍ଦ୍ଧସାମରିକ ବାହିନୀର ଦମନ ବାରିଗାଁ ଓ ଏହାର ନିକଟବର୍ତ୍ତୀ ଗ୍ରାମବାସୀଙ୍କ ଉପରେ ଚାଲିଛି କାରଣ ଏବେବି ସେମାନେ ଆଦିତ୍ୟ ବିରଳାକୁ ବିରୋଧ କରି ଜମିଛାଡ଼ିବେ ନାହିଁ ବୋଲି ଦୃଢ଼ ନିଷ୍ପତ୍ତି ନେଇଛନ୍ତି । ଇତିମଧ୍ୟରେ ସୀଆରପିଏଫ୍‌ର ଏକ କ୍ୟାମ୍ପ କୁମ୍ଭିକଟା ନିକଟରେ ତିଆରି ହେଇଛି । ୨୦୧୪ ମସିହା ଜାନୁଆରୀ ମାସରେ ପୁଣିଥରେ ସେହି ଗ୍ରାମକୁ ଯିବାବେଳେ ଆମ୍ଭେମାନେ ଜାଣିବାକୁ ପାଇଥିଲୁ ଯେ ପ୍ରତି ମାସେ ଦୁଇ ମାସ ଅନ୍ତରରେ ସିଆର ପିଏଫ୍ ଜବାବନମାନେ ଗାଁକୁ ଆସି ଧମକ ଦେଉଛନ୍ତି । ଘରୁ ବଗିଚାରୁ ଯାହା ପାଇଲେ ତାହା ନେଇଯାଉଛନ୍ତି । ଏ ଭିତରେ ମାଓବାଦୀ ସନ୍ଦେହରେ ଆରେଷ୍ଟ ମଧ୍ୟ କରିଥିଲେ ।

ସେଥିରୁ କେତେକ ଜାମିନ୍‌ରେ ଆସିଛନ୍ତି ଓ ଆଉ କେତେକ ଏବେବି ଜେଲ୍‌ରେ ଅଛନ୍ତି ।

କାଶୀପୁର ବ୍ଲକ୍‌ର ସୀମାରେ ଅବସ୍ଥିତ ବାରିଗାଁ ପ୍ରକୃତରେ କୋରାପୁଟ ଜିଲ୍ଲାର ଲକ୍ଷ୍ମୀପୁର ବ୍ଲକରେ ଆସୁଛି । ଏହି ଗ୍ରାମରେ କମଲୁ ମାଝୀ (୨୦)କୁ ସିଆରପିଏଫ ଜବାନମାନେ ଗ୍ରାମ ନିକଟରୁ ଉଠାଇଲେ । ମାତ୍ର କମଲୁକୁ ରାୟଗଡ଼ା ଜିଲ୍ଲାର କୁମ୍ଭିକଟା ଥାନା ପୁଲିସ୍ ଦ୍ୱାରା ୧୩.୦୭.୨୦୧୩ ଦିନ କୋର୍ଟରେ ହାଜର କରାଗଲା । ସେହିପରି ରାୟଗଡ଼ା ଜିଲ୍ଲା ଟିକିରି ଥାନା ଅଧିନସ୍ଥ କାରାଝୋଲା ଗ୍ରାମର ଚିନ୍ତାମଣି ମାଝୀ (୨୬)ଙ୍କୁ ଶଙ୍କରାଡ଼ା ହାଟ ମଧ୍ୟରୁ ସିଆରପିଏଫ୍ ଜବାନମାନେ ୦୮.୦୭.୨୦୧୨ରେ ଉଠାଇଥିଲେ ମଧ୍ୟ କୁମ୍ଭିକଟା ଅଧିକାରୀଙ୍କ ମାଧ୍ୟମରେ ୨୮.୦୮.୨୦୧୨ରେ କୋର୍ଟରେ ହାଜର କରାଇଥିଲେ । ଉଭୟଙ୍କୁ 'ବିଷମକଟକ, ଥାନା ହାଜତକୁ ନେଇ ଭୀଷଣ ମାଡ଼ ମାରିବା ପରେ ଔଷଧ ଦେଇ ଭଲ ହେବା ଉତ୍ତାରୁ କୋର୍ଟରେ ହାଜର କରାଇଲେ' ବୋଲି ଉଭୟ ଅଭିଯୋଗ କରନ୍ତି । ଉଭୟ ଏବେ ଜାମିନ୍‌ରେ ଆସିଛନ୍ତି । ହତ୍ୟା, ହତ୍ୟା ପାଇଁ ଉଦ୍ୟମ, ଦେଶଦ୍ରୋହୀ ଅପରାଧ ସେମାନଙ୍କ ବିରୁଦ୍ଧରେ ଅଛି, ଯାହାର ଶୁଣାଣି ଚାଲିଛି ।

ମାତ୍ର ବାରିଗାଁ ନିକଟସ୍ଥ ଲକ୍ଷ୍ମୀପୁର ବ୍ଲକ୍‌ର ପିପଲପଦର ଗ୍ରାମର ରାମା ମାଣ୍ଡାଙ୍ଗି (୧୮) ପିତା ଗାମ୍ଭି ମାଣ୍ଡାଙ୍ଗି ଏବେବି ପୁଲିସର ଜିମାରେ ଅଛନ୍ତି ତା ସହିତ ହିନ୍ଦୁ ମାଣ୍ଡାଙ୍ଗି (ପିତା : ଗିରି ମାଣ୍ଡାଙ୍ଗି) ମଧ୍ୟ ପୁଲିସ ଜିମାରେ ଅଛନ୍ତି । ବାସଙ୍ଗମାଳୀ ଏନ୍‌କାଉଣ୍ଟର ସମୟରେ ରାମାର ବାମ ହାତରେ ଗୁଳି ବାଜିବା ହେତୁ ସେ ଗାଁକୁ ଆସି ଦେଶୀୟ ଚେରମୂଳି ଦ୍ୱାରା ଚିକିତ୍ସିତ ହେଉଥିଲେ । ମାତ୍ର ଏଥିରେ ଭଲ ନ ହେବାରୁ ସାଥି ହିନ୍ଦୁ ସହିତ ଆଉ ଜଣକ ମଟର ସାଇକେଲରେ ଫେବୃଆରୀ ୦୯/୨୦୧୧ ତାରିଖ ଦିନ ବ୍ରହ୍ମପୁର ଆସୁଥିଲେ । ବାଟରେ ପୁଲିସ ସନ୍ଦେହରେ ସେହିଦିନ ତିନିଜଣଙ୍କୁ ଧରିନେଲା । ଏହାପରେ ମଟର ସାଇକେଲ ଚଳାଉଥିବା ଲଳିତ ଦେହୁରିକୁ ଚମାଖଣ୍ଡି ଥାନା ହାଜତରେ ମାର୍ଚ୍ଚ ୧, ୨୦୧୧ ତାରିଖରେ ପୁଲିସ ପିଟିପିଟି ମାରିଦେବା ପିୟୁସିଏଲ ଓଡ଼ିଶା ନିଜର ରିପୋର୍ଟ ଏପ୍ରିଲ ୨୦୧୧ରେ ପ୍ରକାଶ କରିଛି । ଫେବୃଆରୀ

୯,୨୦୧୧ରେ ଲଳିତ ଦେହୁରି ସମେତ ତିନି ଜଣଙ୍କୁ ପୁଲିସ ଗିରଫ କରିଥିଲେ ମଧ୍ୟ ସେମାନଙ୍କୁ କୋର୍ଟରେ ହାଜର ନକରାଇ ପୁଲିସ୍ ହାଜତରେ ଅତ୍ୟାଚାର କରାଯାଇଥିଲା । ହେଲେ ଏହାର କୌଣସି ବିଧିବଦ୍ଧ ତଦନ୍ତ ଏବେସୁଦ୍ଧା ହୋଇନାହିଁ । ଏ ସମ୍ପର୍କରେ ହାଇକୋର୍ଟ କେତେକ କ୍ଷତିପୂରଣ ଘୋଷଣା କରିବା ବ୍ୟତୀତ ପୋଲିସମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ସୁପାରିଶ କରି ନାହିଁ । ତାହାର କିଛିଦିନ ପରେ ପୁଲିସ ରାମା ମାଣ୍ଡିଙ୍ଗି ଆତ୍ମସମର୍ପଣ କରିଥିବା ଗଣମାଧ୍ୟମ ଆଗରେ ପ୍ରକାଶ କରିଥିଲେ ମଧ୍ୟ ଏବେବି ରାମା ଓ ହିନ୍ଦୁର ପିତାମାତାଙ୍କ ପାଖରେ ସେମାନଙ୍କ ଝିଅ ସମ୍ପର୍କରେ କୌଣସି (ଜାନୁଆରୀ, ୨୦୧୪ ସୁଦ୍ଧା) ସୂଚନା ନାହିଁ ।

ଇତି ମଧ୍ୟରେ ନିୟମଗିରି ଖଣି ଖନନକୁ ବାତିଲ କରିବା ପାଇଁ ସୁପ୍ରିମକୋର୍ଟରେ ଦାଏର ହୋଇଥିବା ମାମଲାରେ ମାନ୍ୟବର ସୁପ୍ରିମକୋର୍ଟ ଏପ୍ରିଲ ୧୯,୨୦୧୩ ରେ ନିୟମଗିରି ଅଞ୍ଚଳରେ ଗ୍ରାମସଭା କରି ସେମାନଙ୍କ ସମ୍ପର୍କରେ ନିଷ୍ପତ୍ତି ନେବା ପାଇଁ ରାଜ୍ୟସରକାର ଓ କେନ୍ଦ୍ର ପରିବେଶ ମନ୍ତ୍ରଣାଳୟଙ୍କୁ ନିର୍ଦ୍ଦେଶ ଦେଇଥିଲେ । ରାଜ୍ୟ ସରକାର ନିୟମଗିରିରେ ପ୍ରାୟ ଶହେ ସରିକି ଗ୍ରାମ ମଧ୍ୟରୁ ଉଭୟ କଳାହାଣ୍ଡି ଓ ରାୟଗଡ଼ାର ୧୨ଟି ଗ୍ରାମରେ ପଲ୍ଲିସଭା ପାଇଁ ନିଷ୍ପତ୍ତି ନେଇଥିଲେ । ଜୁଲାଇ ୧୮,୨୦୧୩ରେ ଏହି ପ୍ରକ୍ରିୟା ରାୟଗଡ଼ା ଜିଲ୍ଲା ମୁନିଗୁଡ଼ା ବ୍ଲକ ଶିବପଦର ପଞ୍ଚାୟତର ସେରକାପାଡ଼ି ଗ୍ରାମରୁ ଆରମ୍ଭ ହୋଇ ପୁଣି ସେହି ଶିବପଦର ପଞ୍ଚାୟତ ଜାରପା ଗ୍ରାମରେ ଅଗଷ୍ଟ ୧୮,୨୦୧୩ରେ ଶେଷ ହୋଇଥିଲା । ଅର୍ଦ୍ଧସାମରିକ ବାହିନୀ ଉପସ୍ଥିତି ଓ ଧମକ ସତ୍ତ୍ୱେ ଏ ସମସ୍ତ ଗ୍ରାମର ଡଙ୍ଗରିଆ କନ୍ଧମାନେ ବେଦାନ୍ତ କମ୍ପାନୀ ବିପକ୍ଷରେ ମତ ଦେଇଥିଲେ । ପରେ କେନ୍ଦ୍ର ସରକାରଙ୍କ ପରିବେଶ ମନ୍ତ୍ରଣାଳୟ ନିୟମଗିରିରେ ଖଣି ଖନନ ପାଇଁ ଦିଆଯାଇଥିବା ମଞ୍ଜୁରୀକୁ ବାତିଲ କରିଥିଲେ ମଧ୍ୟ ଏହା ନିକଟବର୍ତ୍ତୀ ବାସଙ୍ଗମାଳୀ, ସିଜିମାଳୀ ଓ କଣ୍ଡୁମାଳୀ, ତଥା ଅନ୍ୟାନ୍ୟ ମାଳୀ/ପର୍ବତ ଉପରେ ବିପଦ ରହିଛି । ହୁଏତ ସରକାର କେବେବି ଏଥି ମଧ୍ୟରୁ କେଉଁଟିକୁ ପୁଣି ଜବରଦସ୍ତ ଲୋକଙ୍କ ବିରୋଧ ସତ୍ତ୍ୱେ ବେଦାନ୍ତକୁ ଦେଇପାରନ୍ତି । ଯଦି ତାହା ହୁଏ ତେବେ ଆଗାମୀ ଦିନରେ ଆମକୁ ପୁଣି ହୁଏତ ଲୋକଙ୍କ ବିରୋଧ ଓ ତତ୍‌ପରବର୍ତ୍ତୀ ଦମନ ସମ୍ପର୍କରେ ଶୁଣିବାକୁ

ମିଳିପାରେ ।

ସମ୍ବିଧାନର ପଞ୍ଚମ ଅନୁଚ୍ଛେଦ ଯଦିଓ ଆଦିବାସୀଙ୍କ ଜୀବନ ଓ ଜୀବିକାର ସୁରକ୍ଷାର କଥା କୁହେ ମାତ୍ର ନିଜେ ସରକାର ଓ ସରକାରୀ ଶକ୍ତି ଏହାର ବାରମ୍ବାର ଉଲ୍ଲଂଘନ କରିଚାଲିଛନ୍ତି । ମାଓବାଦୀ ଦମନ ନାମରେ ଉଭୟ କେନ୍ଦ୍ର ଓ ରାଜ୍ୟସରକାରଙ୍କ ଦ୍ୱାରା ଯେଉଁଭଳି କମ୍ପାନୀମାନଙ୍କ ପାଇଁ ଜମି ଅଧିଗ୍ରହଣ କରାଯାଇଛି ଏହାକୁ ଆମେ ବିରୋଧ କରୁଛୁ । ଏଠାରେ କହିରଖୁଛି ରାଜ୍ୟପାଳଙ୍କ ଅଧ୍ୟକ୍ଷତାରେ ଗଠିତ ଆଦିବାସୀ ଉପଦେଷ୍ଟା କମିଟିର ଏଭଳି ସଂଗୀନ ସ୍ଥିତିରେ ହସ୍ତକ୍ଷେପ କରିବାର ସାମ୍ବିଧାନିକ ଦାୟିତ୍ୱ ଥିଲେ ମଧ୍ୟ କମିଟିରେ ଏ ସମ୍ପର୍କରେ କୌଣସି ଆଲୋଚନା ହୁଏ ନାହିଁ କିମ୍ବା ରାଜ୍ୟପାଳ କେବେ ହସ୍ତକ୍ଷେପ କରିବାକୁ ଉପଯୁକ୍ତ ମନେକରନ୍ତି ନାହିଁ । ଆମେ ଏଠାରେ ଦାବି କରୁଛି କେଉଁ ଅଞ୍ଚଳରେ ବୃହତ୍ତ ପ୍ରକଳ୍ପ ହେବ କି ନାହିଁ ତାହା ଗ୍ରାମସଭାର ନିଷ୍ପତ୍ତି ଉପରେ ଛାଡ଼ିଦିଆଯାଉ । ସେହିପରି ମାଓବାଦୀ ଦମନ ଅଭିଯାନ ନାମରେ ଯେଉଁଭଳି ସାଧାରଣ ଲୋକଙ୍କୁ ଦମନ କରାଯାଉଛି ସେ ସମ୍ପର୍କରେ ସିବିଆଇ ତଦନ୍ତ କରାଯାଇ ଦୋଷୀ ଅଫିସରଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନିଆଯାଉ ।

## ଦାମୋଦରପୁର ଗ୍ରାମରେ ଦଳିତମାନଙ୍କ ଉପରେ ସଂଗଠିତ ଦମନ ଉପରେ ତଥ୍ୟାନୁସନ୍ଧାନ ରିପୋର୍ଟ :

ଯାଜପୁର ଜିଲ୍ଲା ସୁକିନ୍ଦା ନିର୍ବାଚନ ମଣ୍ଡଳୀର ଦାମୋଦର ପୁର ଗ୍ରାମରେ ଦଳିତ-ସବର୍ଣ୍ଣଙ୍କ ମଧ୍ୟ ସଂଘଟିତ ଗଣ୍ଡଗୋଳର ତଥ୍ୟାନୁଗତ ଅନୁସନ୍ଧାନ ପାଇଁ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ ତରଫରୁ ଏକ ଅନୁସନ୍ଧାନୀ ଦଳ ଉକ୍ତ ଗ୍ରାମକୁ ଗସ୍ତ କରିଥିଲା । ଶ୍ରୀ ବିଜୟ ବିଶ୍ୱାଳ ଓ କାର୍ତ୍ତିକ ସାହୁ ଏହି ଗ୍ରାମକୁ ତା ୭.୧୨.୨୦୧୩ରେ ଯାଇ ତଥ୍ୟାନୁସନ୍ଧାନ କରିଥିଲେ ।

ସୁକିନ୍ଦା ଗ୍ରାମରୁ ମାତ୍ର ୧୦ କି.ମି. ଦୂରରେ ଅବସ୍ଥିତ ଦାମୋଦରପୁର ଗ୍ରାମ, ପ୍ରାୟତଃ ୨୦୦ଟି ପରିବାର ନେଇ ଗ୍ରାମଟି ଗଠିତ । ଶାନ୍ତ ପ୍ରିୟ ଗ୍ରାମଟିରେ ଦେଖାଦେଇଥିଲା ଏକ ଅଶାନ୍ତ ବାତାବରଣ । ଦଳିତ ଓ ସବର୍ଣ୍ଣଙ୍କ ମଧ୍ୟରେ ଜମିକୁ ନେଇ ଘଟିଥିଲା ଏକ ସଂଘର୍ଷ । ଆମ ଅନୁସନ୍ଧାନରୁ ଜଣାଯାଏ ଯେ, ଦଳିତ ବସ୍ତିର

ଅନତି ଦୂରରେ ପ୍ରାୟ ଏକ ଏକରରୁ ଅଧିକ ଏକ ଗୋଚର ଜମି ରହିଛି (ପ୍ଲଟ୍ ନଂ-୧୬୨୬) । ଦଳିତ ସମ୍ପ୍ରଦାୟ ଏହି ଜମି ଉପରେ ଦୈନନ୍ଦିନ କାର୍ଯ୍ୟ ଓ ଗୋରୁଗାଈଙ୍କ ମଡ଼ା ପକାଇବା ଇତ୍ୟାଦି କାମ ପାଇଁ ଦୀର୍ଘ କାଳରୁ ଚଳି ଆସୁଛନ୍ତି ।

ଟାଟା କମ୍ପାନୀର ଟାଟା ଗ୍ରାମ୍ୟ ଉନ୍ନୟନ ସୋସାଇଟି ଉକ୍ତ ଗୋଚର ଜମି ଉପରେ ଏକ କ୍ଲବ ନିର୍ମାଣ କରିବାର ଯୋଜନା କରିଥିଲା ଓ ଉକ୍ତ କ୍ଲବ ନିର୍ମାଣକୁ ଦଳିତ ଅଧିବାସୀମାନେ ବିରୋଧ କରିଥିଲେ । ଟାଟା କମ୍ପାନୀ ପାଖରେ ପ୍ରତିବାଦ କଲେ ଯେ ସେମାନେ ଚଳପ୍ରଚଳ ଓ ଦୈନନ୍ଦିନ କାର୍ଯ୍ୟପାଇଁ ବ୍ୟବହାର କରୁଥିବା ଏହି ଗୋଚର ଜାଗାଟିରେ ଏପରି କିଛି ନିର୍ମାଣ କାର୍ଯ୍ୟ ହେଲେ ଲୋକମାନେ ଅସୁବିଧାର ସମ୍ମୁଖୀନ ହେବେ । ଲୋକମାନଙ୍କର ଏହି ଅଭିଯୋଗକୁ ଦୃଷ୍ଟିରେ ରଖି ଟାଟା କମ୍ପାନୀ କ୍ଲବ ନିର୍ମାଣ କାର୍ଯ୍ୟରୁ ବିରତ ରହିଥିଲା ।

ସ୍ଥାନୀୟ ଲୋକଙ୍କଠାରୁ ଜଣାଗଲା ନେସ୍‌କୋ କମ୍ପାନୀ ଏକ ବିଦ୍ୟୁତ୍ ସବ୍‌ଷ୍ଟେସନ୍ ନିର୍ମାଣ ପାଇଁ ଉକ୍ତ ଜାଗାକୁ ବାଛିବା ସହ ଗ୍ରାମର ସବର୍ଣ୍ଣ ଶ୍ରେଣୀର ପ୍ରଭାବଶାଳୀ, ଶାସକ ଦଳର ବ୍ୟକ୍ତିଙ୍କ ଦ୍ୱାରା ଉକ୍ତ ଜମିକୁ ଅକ୍ତିଆର କରିବାକୁ ଉଦ୍ୟମ କଲେ । ଗ୍ରାମର ଶତାଧିକ ସବର୍ଣ୍ଣ ବ୍ୟକ୍ତି ନେସ୍‌କୋ କମ୍ପାନୀ ସପକ୍ଷରେ ରହି ବିଦ୍ୟୁତ୍ ସବ୍‌ଷ୍ଟେସନ୍ ନିର୍ମାଣ ଦିଗରେ ଲାଗିପଡ଼ିଲେ । ଯଦ୍ୱାରା ଦଳିତମାନଙ୍କ ମଧ୍ୟରେ ଗଭୀର ଅସନ୍ତୋଷ ଦେଖାଦେଲା । ସେମାନେ ଏ ସମ୍ପର୍କରେ ତହସିଲଦାର, ସୁକିନ୍ଦାଙ୍କ ନିକଟରେ ଅଭିଯୋଗ କରିଥିଲେ ବୋଲି ଗ୍ରାମବାସୀମାନେ ଜଣାଇଥିଲେ । ତହସିଲଦାର କହିଥିଲେ ଯେ ନେସ୍‌କୋକୁ ଏହି ବିରୋଧ କଲେ ଭଲ ହେବନାହିଁ । ଫଳତଃ ଦଳିତ ସମ୍ପ୍ରଦାୟ ଭୟଭୀତ ଅବସ୍ଥାରେ ରହିଲେ ।

ଗ୍ରାମବାସୀମାନଙ୍କ ତରଫରୁ ଏକ ଗ୍ରାମ୍ୟ ବୈଠକକୁ ଦଳିତମାନଙ୍କୁ ଡକାଯାଇଥିଲା । ତା ୨୯.୧୦.୧୩ରିଖରେ ଆହୁତ ଉକ୍ତ ବୈଠକକୁ ଯିବା ପୂର୍ବରୁ କାଳେ କିଛି ଅଘଟଣ ଘଟିଯିବ, ଏହି ଭୟରେ ଦଳିତ ସାହିର କିଛି ବ୍ୟକ୍ତି ପୋଲିସକୁ ଅଗ୍ରୀମ ଏତଲା ଦେବାପାଇଁ ଥାନାକୁ ଯାଇଥିଲେ ବୋଲି ଲୋକମାନେ କହିଲେ । ସାହିରୁ ୫ଜଣ ବ୍ୟକ୍ତି ଶ୍ରୀ ଜମ୍ବେଶ୍ୱର ପାତ୍ର, ହରି ପାତ୍ର, ରବି ପାତ୍ର, ରଥି ପାତ୍ର ଓ

କୈଳାସ ପାତ୍ର ଉକ୍ତ ବୈଠକରେ ଯୋଗ ଦେଇଥିଲେ । ବୈଠକ ଚାଲିଥିବା ସମୟରେ ଖବର ମିଳିଲା ଯେ, ଦଳିତ  ସାହିର କିଛି ବ୍ୟକ୍ତି ଥାନାରେ ସବର୍ଣ୍ଣଙ୍କ ବିପକ୍ଷରେ ଏତଲା ଦେବା ପାଇଁ ଯାଇଛନ୍ତି । ଏହି ଖବରରେ ଉତ୍କ୍ଷିପ୍ତ ହୋଇ ସବର୍ଣ୍ଣବ୍ୟକ୍ତିମାନେ ବୈଠକକୁ ଆସିଥିବା ଦଳିତମାନଙ୍କୁ ପ୍ରବଳ ମାଡ଼ ଓ ଗାଳି ଗୁଲଜ କଲେ । ପରେ ପରେ ଦଳିତ ସାହି ଆଡ଼କୁ ୩୦/୪୦ ଜଣ ସବର୍ଣ୍ଣ ବ୍ୟକ୍ତି ମାଡ଼ିଆସି ବିଭିନ୍ନ ମାରଣାସ୍ତ୍ର ସହ ଆକ୍ରମଣ କଲେ । ସେମାନେ ଦଳିତ ସାହିର ୧୫ଟି ଘରର ଆଜ୍‌ବେସ୍‌ଟସ, ଇତ୍ୟାଦି ଭାଙ୍ଗି ଦେଇଥିଲେ । ୪ଟି ଟିଭିସେଟ୍, ଗୋଟିଏ ମୋଟର ସାଇକେଲ ଭାଙ୍ଗି ଦେଲେ । ଦଳିତମାନଙ୍କର ୨ଟି ଦୋକାନ ଭାଙ୍ଗି ସମସ୍ତ ଜିନିଷ ଓ ଟଙ୍କା ଲୁଟି ନିଆଯାଇଥିଲା ବୋଲି ଅଭିଯୋଗ କରିଥିଲେ । ଦଳିତ ବ୍ୟକ୍ତିମାନେ ଆହୁରି ଅଭିଯୋଗ କରିଥିଲେ ଯେ, ଝିଅ ବୋହୂମାନଙ୍କୁ ଅତ୍ୟନ୍ତ ଅସଭ୍ୟ ବ୍ୟବହାର ଓ ଗାଳିଗୁଲଜ କରାଯାଇଥିଲା । ଘରେ ରହିଥିବା ଶ୍ରୀ ଗୋପୀ ପାତ୍ର (ବୟସ ୬୦)ଙ୍କୁ ଘରୁ ଟାଣି ଆଣି ପ୍ରବଳ ମାଡ଼ ଦିଆଯାଇଥିଲା । ଫଳତଃ ଚିକିତ୍ସାଧୀନ ଅବସ୍ଥାରେ ଗତ ତା ୨୩.୧୧.୨୦୧୩ ରେ ସେ ମୃତ୍ୟୁ ବରଣ କରିଥିଲେ ।

ଅନୁସନ୍ଧାନରୁ ଜଣାଗଲା ଯେ, ଏହି ଘଟଣାପରେ ଉଭୟ ପକ୍ଷରୁ ଥାନାରେ ଏତଲା ଦିଆଯାଇଥିଲା । ସବର୍ଣ୍ଣମାନଙ୍କ ତରଫରୁ ଅଭିଯୋଗ କରାଯାଇଥିଲା ଯେ, ଦଳିତମାନେ ସେମାନଙ୍କୁ ତୀରରେ ଆକ୍ରମଣ କରିଥିଲେ ଓ ଜଣେ ବ୍ୟକ୍ତି ଏଥିରେ ଆହତ ହୋଇଛନ୍ତି । ଉଭୟ ପକ୍ଷରୁ ୪/୫ ଜଣ ବ୍ୟକ୍ତିଙ୍କୁ ପୋଲିସ ଗିରଫ କରିଥିଲା ଓ ସେମାନେ ଜାମିନ ପାଇଥିଲେ । ଉକ୍ତ ଗ୍ରାମରେ ତୀରମାଡ଼ରେ ଆଘାତ ପାଇଥିବା କୌଣସି ବ୍ୟକ୍ତିର ସନ୍ଧାନ ଆମେ ପାଇ ନ ଥିଲୁ । ଅଧିକ ଗଣ୍ଡଗୋଳ ଆଶଙ୍କା କରି ଏକମାସ ଯାଏ ପୋଲିସ ଉକ୍ତ ଗ୍ରାମରେ ମୁତୟନ କରାଯାଇଥିଲା ।

ଉପସଂହାର : ଆମର ଅନୁସନ୍ଧାନରୁ ଜଣାଗଲା ଯେ, ଦାମୋଦରପୁର ଗ୍ରାମରେ ସଂଘଟିତ ଗଣ୍ଡଗୋଳର ୪୦ ଦିନ ପରେ ବି ଦଳିତ ପରିବାର ସେଠାରେ ଅତ୍ୟନ୍ତ ଭୟଭୀତ ଅବସ୍ଥାରେ ଅଛନ୍ତି । ସବର୍ଣ୍ଣମାନେ ରାସ୍ତାଘାଟରେ ଅତ୍ୟନ୍ତ ଅସଭ୍ୟ, ଜାତିଗତ ଆକ୍ଷେପ କରି ଦଳିତମାନଙ୍କୁ ଗାଳିଗୁଲଜ କରିଛନ୍ତି । ମହିଳାମାନେ ମଧ୍ୟ ନିଜକୁ ସୁରକ୍ଷିତ

ମନେ କରୁନାହାନ୍ତି । ମହିଳାମାନଙ୍କୁ ମଧ୍ୟ ସେହିପରି ଅସଭ୍ୟ ବ୍ୟବହାର କରାଯାଉଛି । ଏ ସମ୍ପର୍କରେ ଉକ୍ତ ସାହିର ମହିଳାମାନଙ୍କ ତରଫରୁ ଦିଆଯାଇଥିବା ଏଫ୍‌ଆଇଆର ଉପରେ କୌଣସି ପଦକ୍ଷେପ ସୁକିନ୍ଦା ପୋଲିସ୍ ତରଫରୁ ନିଆଯାଇନାହିଁ ।

ଆମର ତଦନ୍ତ ପର୍ଯ୍ୟନ୍ତ ଦଳିତ ବ୍ୟକ୍ତିମାନେ ଅତ୍ୟନ୍ତ ଭୟଭୀତ ଅବସ୍ଥାରେ ରହିଥିବାର ଜଣାଇଥିଲେ । ଦଳିତମାନଙ୍କ ଉପରେ ହୋଇଥିବା ଅତ୍ୟାଚାର ସମ୍ପର୍କୀତ ଆଇନ ଅଦ୍ୟାବଧି ଲାଗୁ କରାଯାଇ ନାହିଁ ଓ ଆସାମୀମାନେ ଅଦ୍ୟାବଧି ଗିରଫ ହୋଇନାହାନ୍ତି ।

ଘର ଭାଙ୍ଗିଛି :

୧. ହରି ପାତ୍ର
୨. ରମେଶ ପାତ୍ର
୩. ମଦନ ପାତ୍ର
୪. ରବି ପାତ୍ର – ମଟର ସାଇକେଲ, ଟିଭି ଭାଙ୍ଗିଛି
୫. ଶରତ ପାତ୍ର – ଜଳଖିଆ ଦୋକାନ, ହାଣ୍ଡି ଭାଙ୍ଗିଛି
୬. ରବି ପାତ୍ରର ଭୂଷା ଦୋକାନ
୭. ବାବୁଲି ପାତ୍ରର ଘର ଭାଙ୍ଗିଛି । ଲଗାତର ୪ ଦିନ ପରେ ଗାଡ଼ିରେ ଇଲେକ୍‌ଟ୍ରିକ୍ ଖୁଣ୍ଟ ଭାଙ୍ଗି ଘର ଉପରେ ପକାଇ ଦେଲେ ଓ AC Sheet ଭାଙ୍ଗିଲେ
୮. ରବି ପାତ୍ର – ପି– ମାଗି ପାତ୍ରର ଘର ଭାଙ୍ଗିଛି ଓ ସେ ଘର ଛାଡ଼ି ଶଶୁର ଘରେ ଅନ୍ୟତ୍ର ରହୁଛି ।
୯. ସୁକାନ୍ତ ପାତ୍ରର ଫ୍ୟାନ ୨ଟା ଭାଙ୍ଗିଛି ଓ ଡେକଚି ଚେପା ହୋଇଛି ।
୧୦. କଳାକାର ପାତ୍ରର କବାଟ, ଟିଭି, ଟେବୁଲ ଭାଙ୍ଗିଛନ୍ତି ।
୧୧. ରବି ପାତ୍ରର ଦୋକାନ ଭାଙ୍ଗି ସମୁଦାୟ ଲୁଟି କରିନେଲେ । ୩୫ ହଜାର ଟଙ୍କା ଓ ୭୦ରୁ ୮୦ ହଜାର ଟଙ୍କାର ସଉଦା ନେଇ ଫ୍ରିଜ ବାଡ଼େଇ ଓ ସାଇକେଲ ଭାଙ୍ଗିଛନ୍ତି ।
୧୨. କୃଷ୍ଣ ପାତ୍ରର ଚାଳ ଘର ଭାଙ୍ଗିଛି ।

□□

# ବାଲେଶ୍ୱର ଜିଲ୍ଲା ବାଳଗୋପାଳପୁର ଶିଳ୍ପାଞ୍ଚଳରେ ପ୍ରଦୂଷଣ ଜନିତ ସମସ୍ୟାର ତଥ୍ୟାନୁସନ୍ଧାନ କମିଟିର ରିପୋର୍ଟ

ଉତ୍ତର ଓଡ଼ିଶାର ପ୍ରମୁଖ ଜିଲ୍ଲା ବାଲେଶ୍ୱର ସହରର ଉପକଣ୍ଠରେ ଜାତୀୟ ରାଜପଥର ରେମୁଣା ଗୋଲେଇଠାରୁ ନୀଳଗିରି-ମିତ୍ରପୁର ରାସ୍ତାରେ ପ୍ରାୟତଃ ୧୦କି.ମି. ଦୂରରେ ଅବସ୍ଥିତ ବାଳଗୋପାଳପୁର ଶିଳ୍ପାଞ୍ଚଳ । ପୂର୍ବଘାଟ ପର୍ବତଶ୍ରେଣୀର ନୀଳଗିରି ପାହାଡ଼ର ପ୍ରାୟତଃ ପାଦଦେଶରେ ଅବସ୍ଥିତ ଏହି ଶିଳ୍ପାଞ୍ଚଳ କେବଳ ପରିବେଶ ପାଇଁ ବିପଦରେ ପରିଣତ ହୋଇଛି ତା ନୁହେଁ, ଅଧିକନ୍ତୁ ବିସ୍ଥାପିତ ମାନଙ୍କର ଜନଆନ୍ଦୋଳନର ଏହା ଏକ କାରଣ ମଧ୍ୟ । ବହୁ ପ୍ରତାରଣା ଓ ଶୋଷଣର ଶିକାର ହୋଇ ବିସ୍ଥାପିତମାନେ ଗଢ଼ିଛନ୍ତି "ଜନ ଜୀବନ ସୁରକ୍ଷା ମଞ୍ଚ" ଓ ଏହାର ନେତୃତ୍ୱରେ ମୁଣ୍ଡଟେକିଛି ଏକ ଜନ ଆନ୍ଦୋଳନ । ଏହି ଆନ୍ଦୋଳନକାରୀଙ୍କ ଅନୁରୋଧ କ୍ରମେ 'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ' ଓଡ଼ିଶା ବାଲେଶ୍ୱର ଶାଖାର ତଥ୍ୟାନୁସନ୍ଧାନକାରୀ ଦଳ ଏହି ଅଞ୍ଚଳରେ ତଥ୍ୟ ସଂଗ୍ରହ ଓ ଅନୁଧ୍ୟାନ କରିଛନ୍ତି । ଏହି ରିପୋର୍ଟ ହେଉଛି ଶିଳ୍ପାୟନ, ବିସ୍ଥାପିତ ସମସ୍ୟା ଓ ଜନ ଆନ୍ଦୋଳନର ଅନୁଧ୍ୟାନ, ଅଧ୍ୟୟନ ଓ ସମୀକ୍ଷାର ବିନମ୍ର ପ୍ରୟାସ ।

**ବାଳଗୋପାଳପୁର ଶିଳ୍ପାଞ୍ଚଳ ଓ ତା'ର ଇତିହାସ :**

ପୂର୍ବରୁ ବାଲେଶ୍ୱର ଜିଲ୍ଲା ଏକ କୃଷି ପ୍ରଧାନ ଅଞ୍ଚଳ ଭାବରେ ଖ୍ୟାତ ଥିଲା । 'ରୁଆ ଧାନ ଥୁଆ' ଭାବରେ ଖ୍ୟାତ ଅବିଭକ୍ତ ବାଲେଶ୍ୱର ଜିଲ୍ଲା (୧୯୯୩ ମସିହାରେ ଏହା ଦ୍ୱିଭାଗ ହୋଇ ଭଦ୍ରକ ଓ ବାଲେଶ୍ୱର ଜିଲ୍ଲାରେ ପରିଣତ ହେଲା), ଧାନଚାଷ ବ୍ୟତୀତ ଡାଲି ଜାତୀୟ ଫସଲ ଯଥା- ମୁଗ ଓ ବିରି ଓ ତୈଳ ଜାତୀୟ ଫସଲ ଯଥା- ବାଦାମ, ଓ ତୀଳ ପାଇଁ ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧି ଥିଲା । ଭାରତର ପ୍ରମୁଖ ସହର ଚେନ୍ନାଇ, ହାଇଦ୍ରାବାଦ, ଭୁବନେଶ୍ୱର ସହିତ କଲିକତା ସହରକୁ ଉଭୟ ସ୍ଥଳପଥ ଓ ରେଳପଥ ଦ୍ୱାରା ସଂଯୋଗ କରୁଥିବା ହେତୁ ଏହି ଜିଲ୍ଲା ଯୋଗାଯୋଗ କ୍ଷେତ୍ରରେ ମଧ୍ୟ ଉନ୍ନତ ଥିଲା ।

ଦ୍ରୁତ ଶିଳ୍ପାୟନ ନିମନ୍ତେ କେନ୍ଦ୍ର ସରକାର ଶିଳ୍ପନୀତି, ୧୯୮୦ ଘୋଷଣା କଲେ ଓ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ପଟ୍ଟନାୟକଙ୍କ ସମୟରେ ସେହି ନୀତି ଅନୁସାରେ ବାଲେଶ୍ୱର ଜିଲ୍ଲାକୁ ଶିଳ୍ପ ଦୃଷ୍ଟିରୁ ପଛୁଆ ଜିଲ୍ଲା ଭାବରେ ତାଲିକାରେ ଭୁକ୍ତ କରାଗଲା । ଶିଳ୍ପନୀତି, ୧୯୮୦ ଏକଥା ଉଲ୍ଲେଖ ରହିଲା ଯେ ଶିଳ୍ପଦୃଷ୍ଟିରୁ ପଛୁଆ ଜିଲ୍ଲାମାନଙ୍କରେ ଏକକ କାରଖାନା ତିଆରି ହେଲେ ଏହା ବହୁ କ୍ଷୁଦ୍ର ଉଦ୍ୟୋଗ ମଧ୍ୟ ପ୍ରତିଷ୍ଠା ହେବାରେ ସାହାଯ୍ୟ କରିବ ଯାହାକି 'ନୂତନ ଚାକିରି ସୃଷ୍ଟି' କରିବା ସହିତ 'ମୁଣ୍ଡପିଛା ଆୟର ବୃଦ୍ଧି' ମଧ୍ୟ ଘଟାଇବ ।

'The proposed nucleus plant in inclustrially backword districts would generate a spreadout network of small scale unit... such two way traffic would create on anciliarisation effect in terms of large employment, more equitable distribution of the benefits of such an industrialisation in the shape of a higher per capita income for the large number of people'.

- Industrial policy statement, 1980

ଏହା ପରେ ପରେ ସରକାରୀ ପ୍ରୋତ୍ସାହନରେ ବୃହତ ଉଦ୍ୟୋଗ ଭାବରେ ୧୯୮୫ରେ ଫେରୋଏଲଏଜ୍ କର୍ପୋରେସନ ଲିମିଟେଡ଼ (ଯାହା ଏବେ ଭଦ୍ରକ ଜିଲ୍ଲାରେ ଆସୁଛି) ଓ ୧୯୯୧ରେ ବିରଳା ଟାୟାର୍ସ ପ୍ରତିଷ୍ଠିତ ହେଲା । ସେହିପରି କେତେକ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ମଧ୍ୟ ଜିଲ୍ଲାରେ ଅଶୀ ଦଶକ ପରେ ପ୍ରତିଷ୍ଠା ହେଲା ।

ବାଲେଶ୍ୱର ସହର ସନ୍ନିକଟ ବାଳଗୋପାଳପୁର ଅଞ୍ଚଳ ଜିଲ୍ଲାର ଅନ୍ୟତମ ଶ୍ରେଷ୍ଠ ଶିଳ୍ପାଞ୍ଚଳ ଭାବରେ ଖ୍ୟାତ । ବାଲେଶ୍ୱର ସହର ଓ ନୀଳଗିରି ପାହାଡ଼ର ପାଦଦେଶରେ ଅବସ୍ଥିତ ଏହି ଶିଳ୍ପାଞ୍ଚଳ ସେହି ଅଶିଦଶକ ପରେ ଦ୍ରୁତ ଭାବରେ ଗଢ଼ି ଉଠିଲା । ଏଠାରେ ଏମାମି ପେପରମିଲ୍ (୧୯୮୨) ଓ ଇସ୍ପାତ ଏଲଏଜ୍ ବା ବାଲେଶ୍ୱର ଏଲଏଜ୍ (୧୯୮୪) ଭଳି ମଧ୍ୟମ ଉଦ୍ୟୋଗ ସହିତ ଦୁଇଟି ଛୋଟ ଶିଳ୍ପ ପ୍ରତିଷ୍ଠାନ ଯଥା 'ମଲ୍ଟି ପ୍ୟାକେଜିଂ' ଏବଂ 'ବି ଏଣ୍ଡ ସେଲ୍ସ' ମଧ୍ୟ ଏହି ଶିଳ୍ପାଞ୍ଚଳର ଅଂଶବିଶେଷ । ଏହାର ଅନତି ଦୂରରେ ସୋମନାଥପୁରଠାରେ ପ୍ରତିଷ୍ଠିତ ହେଲା- 'ବିଲା ଟାୟାର୍ସ' । ଏହିସବୁ

ଶିଳ୍ପ ପ୍ରତିଷ୍ଠିତ ହେଲାବେଳେ ସ୍ୱାଭାବିକ୍ ଭାବରେ ଏମାନେ ଜିଲ୍ଲାର ବେକାରୀ ଯୁବକଙ୍କୁ ନିଯୁକ୍ତି ଦେବାର ସ୍ୱପ୍ନକୁ ପାଥେୟ କରି କେବଳ ସରକାରୀ ସ୍ୱୀକୃତି ନୁହେଁ ତା ସହିତ ବାଲେଶ୍ୱର ଜିଲ୍ଲାବାସୀଙ୍କ ସ୍ୱୀକୃତି ମଧ୍ୟ ପାଇଥିଲେ । ଫଳରେ ବହୁ ଆଶା ଓ ପ୍ରତିଶ୍ରୁତି ନେଇ ବାଲଗୋପାଳପୁରର ବିସ୍ତୃତ ଚାରଣ ଭୂମିରେ ଗଢ଼ି ଉଠିଥିଲା ଏହି ଶିଳ୍ପାଞ୍ଚଳ । ପୂର୍ବ ପାକିସ୍ତାନରୁ ବିତାଡ଼ିତ ଶରଣାର୍ଥୀଙ୍କୁ ନେଇ ୧୯୫୦ ମସିହାରେ ଏଠାରେ ଏକ ଶରଣାର୍ଥୀ କଲୋନୀ ପ୍ରତିଷ୍ଠିତ ହୋଇଥିଲା । ଏହାର ପାର୍ଶ୍ୱରେ ବାଲଗୋପାଳପୁର ଶିଳ୍ପାଞ୍ଚଳ ଅବସ୍ଥିତ ।

**କ୍ଷତିଗ୍ରସ୍ତ ଅଞ୍ଚଳ ଓ ଜନତା :**

କାଳକ୍ରମେ ନିଜର କାୟିକ ଅଭିବୃଦ୍ଧି ନିମିତ୍ତ ଶରଣାର୍ଥୀଙ୍କ ଜମିକୁ ମଧ୍ୟ କଳେ ବଳେ କୌଶଳେ ଶିଳ୍ପ ପ୍ରତିଷ୍ଠାନ ମାନଙ୍କ ଦ୍ୱାରା ହସ୍ତଗତ କରାଯାଉଛି । ଏହା ସହିତ ନିକଟବର୍ତ୍ତୀ ବହୁଗ୍ରାମ ମଧ୍ୟ ଏହି ଶିଳ୍ପାଞ୍ଚଳର ଭୌଗୋଳିକ ପ୍ରସାରଣରୁ ବାଦଯାଇନାହିଁ । ଦୁଇଟି ମଧ୍ୟମ ଶିଳ୍ପ ସଂସ୍ଥା ଯଥା- 'ଏମାମି ପେପର ମିଲ୍ସ' ଓ 'ଇସ୍ପାତ ଏଲଏଇ୍' (ବା ଏବର 'ବାଲେଶ୍ୱର ଏଲଏଇ୍') ଶିଳ୍ପାୟନ ଦ୍ୱାରା ବିଶେଷ ଭାବରେ ରେମୁଣା ପଞ୍ଚାୟତ ସମିତିର ନୁଆପଡ଼ା, ଗଣିପୁର, ମୁଖୁରା ଓ ନରହରିପୁର ଆଦି ୪ଟି ଗ୍ରାମପଞ୍ଚାୟତର ୧୩ଟି ଗ୍ରାମ ଯଥା- ନୂଆପାଟୀ, ବାଳ ଗୋପାଳ ପୁର, ଶିରେକାପୁର, ରସଲପୁର, ବାଟି ଟାଙ୍କି, ବିଦ୍ୟାଧରପୁର, ମୁଖୁରା, ଗୌରପୁର, ପୁରୁଷୋତ୍ତମପୁର, ରହଣିଆ, ଗୋବିନ୍ଦପୁର, ନରହରିପୁର ଓ ବେଗମପୁର ଅଞ୍ଚଳ ପ୍ରଭାବିତ ହେଉଛି । ପ୍ରଭାବିତ ଜନସଂଖ୍ୟା ପ୍ରାୟ ୨୦,୫୦୦ ହେବ । ଏଥିରୁ ଅର୍ଦ୍ଧେକ ଦେଉଛନ୍ତି ଦଳିତ ଓ ଆଦିବାସୀ ବର୍ଗର ।

ମୋଟ ପ୍ରାୟ ୬୦୦୦ କ୍ଷତିଗ୍ରସ୍ତ ପରିବାର ମଧ୍ୟରୁ ଅଧିକାଂଶ ଗରୀବ ଶ୍ରେଣୀର । ଶରଣାର୍ଥିଙ୍କ ମଧ୍ୟରେ ଦୁଇ-ତୃତୀୟାଂଶ ଦଳିତ ବର୍ଗର ଅଟନ୍ତି । ଏମାନଙ୍କ ମଧ୍ୟରେ ବହୁ ପରିବାର ଶିଳ୍ପାୟନ ହେତୁ ଆଜି ପ୍ରତ୍ୟକ୍ଷ ବିସ୍ଥାପନ ଶିକାର ହୋଇଛନ୍ତି, ଯାହାଙ୍କ ଭିତରେ ଅଛନ୍ତି କେତେକ ଇନ୍ଦିରା ଆବାସ ପ୍ରାପ୍ତ ଦଳିତ ପରିବାର ମଧ୍ୟ । ଏହି ଜନସଂଖ୍ୟାର ଊଣା ଅଧିକେ ସମସ୍ତେ ଚାଷୀ । ବିଶେଷତଃ ଧାନଚାଷ ଉପରେ ନିଜର

ଜୀବନ ଧାରଣ କରିଥାନ୍ତି । ଚାଷ ବ୍ୟତୀତ ଦିନ ମଜୁରି ଏମାନଙ୍କ ଅନ୍ୟତମ ରୋଜଗାରର ରାସ୍ତା ।

**ପ୍ରତାରଣା ଓ ହତାଶା :**

ବହୁ ଆଶା ଓ ଉଦ୍ଦୀପନା ମଧ୍ୟରେ ପ୍ରତିଷ୍ଠିତ ହୋଇଥିବା ଏହି ଶିଳ୍ପାଞ୍ଚଳ ସ୍ଥାନୀୟ ଜନମାନସରେ ପ୍ରତାରଣା ଓ ହତାଶାର ବାତାବରଣ ସୃଷ୍ଟି କରିଛି । ପ୍ରତିଷ୍ଠା ସମୟରେ ସ୍ଥାନୀୟ ଜନତା ଆଶା କରିଥିଲେ ଏହା ବହୁ ନିଯୁକ୍ତିର ସୁଯୋଗ ସୃଷ୍ଟି କରିବ, ଦାରିଦ୍ର୍ୟ ହଟିବ ଏବଂ ଗାଁ ମହାଜନ ମାନଙ୍କର ଶୋଷଣ ଓ ଅତ୍ୟାଚାରର ସମାପ୍ତି ହେବ । କିନ୍ତୁ ସ୍ଥାନୀୟ ବାସିନ୍ଦା ମାନଙ୍କ ମଧ୍ୟରୁ ବହୁ କମ ଲୋକ ନିଯୁକ୍ତିର ସୁବିଧା ପାଇଲେ । ଛୋଟ ବଜାର ଗଢ଼ି ଉଠିବାର ସ୍ୱପ୍ନ ମଧ୍ୟ ସ୍ୱପ୍ନରେ ରହିଗଲା । ବରଂ କାଳକ୍ରମେ ନିଜ ନିଜ ଜମିରୁ ଚକ୍ରାନ୍ତ କ୍ରମେ ବିତାଡ଼ିତ ହୋଇ ବହୁ ଲୋକ ହୋଇଗଲେ ନିଃସ୍ୱ ଓ ବାସହୀନ ତଥା ପରିବେଶ ପ୍ରଦୂଷଣ ଫଳରେ ରୋଗାକ୍ରାନ୍ତ ।

**ଜନ ଆନ୍ଦୋଳନ :**

ପ୍ରତାରଣା ଓ ହତାଶାର ଫଳ ସ୍ୱରୂପ ଜନ୍ମ ନେଲା ଜନ ଆନ୍ଦୋଳନ । ବିଭିନ୍ନ ସମୟରେ ବିଭିନ୍ନ ଉପାୟରେ ଦାବି ଉପସ୍ଥାପନା ପରେ ଏହି ପ୍ରଭାବିତ ଅଞ୍ଚଳର ଜନଗଣ ୨୦୧୧ ମସିହା ମେ ମାସ ୯ ତାରିଖ ଦିନ 'ଜନ ଜୀବନ ସୁରକ୍ଷା ମଞ୍ଚ' ଗଠନ କଲେ । 'ବାଲେଶ୍ୱର ଏଲଏଜ୍'ର କର୍ତ୍ତୃପକ୍ଷଙ୍କ ନିକଟରେ ତା ୨୨.୮.୨୦୧୧ ରିଖ ଦିନ ଏକ ୬ ଦଫା ସମ୍ବଳିତ ଦାବିପତ୍ର ସୁରକ୍ଷା ମଞ୍ଚ ତରଫରୁ ଉପସ୍ଥାପନା କରାଗଲା । ୨୦୧୧ ମସିହାରେ ଏହି ଦାବି ଗୁଡ଼ିକର ପୂରଣ ପାଇଁ ବାଲେଶ୍ୱର ଜିଲ୍ଲାପାଳ, ରେମୁଣାର ବିଧାୟକ, ଓଡ଼ିଶାର ଶିଳ୍ପମନ୍ତ୍ରୀ ଓ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ମଧ୍ୟ ଦାବିପତ୍ର ପ୍ରଦାନ କରାଯାଇଥିବା ଜଣାଯାଏ । ତଥାପି ଦାବିଗୁଡ଼ିକ କାର୍ଯ୍ୟକାରୀ ନହେବା ହେତୁ ଏହାର କାର୍ଯ୍ୟକାରୀତା ପାଇଁ ଜିଲ୍ଲାପାଳଙ୍କ ଦପ୍ତର ଆଗରେ ଶାନ୍ତିପୂର୍ଣ୍ଣ ଭାବରେ ଡିସେମ୍ବର ୨୦୧୧ ମସିହାରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା । ଏହା ସହିତ ୩୧.୮.୨୦୧୩ରେ ବାଲଗୋପାଳପୁର ଠାରେ ଏକ ଗଣଧାରଣା ମଧ୍ୟ ଅନୁଷ୍ଠିତ

ହୋଇଥିଲା । ସେହି ୬ ଦଫା ଦାବିଗୁଡ଼ିକ ହେଲା,

୧. ଜମି, ଘରବାଡ଼ି ଓ ଘର ହରାଇ ଉଦ୍‌ବାସ୍ତୁ ହୋଇଥିବା ଲୋକଙ୍କୁ ଉଚିତ ମୂଲ୍ୟରେ କ୍ଷତିପୂରଣ ।

୨. ଜାଗା ଓ ଜମି ହରାଇଥିବା ପରିବାରର ଲୋକଙ୍କୁ ନିଯୁକ୍ତି ।

୩. ପ୍ରଦୂଷଣର ପ୍ରତିକାର ଏବଂ ପରିବେଶର ସୁରକ୍ଷା ।

୪. ସ୍ଥାନୀୟ ଅଞ୍ଚଳର ସାମଗ୍ରିକ ବିକାଶ

୫. ଜାତୀୟ ଥଇଥାନ ନୀତିର ବାସ୍ତବ ରୂପାୟନ

୬. କମ୍ପାନୀ ମାନଙ୍କର ମନମୁଖୀ ଜମି ଦଖଲ ଆଦି ଅପରାଧ ବିରୁଦ୍ଧରେ ଆଇନଗତ ଦଣ୍ଡବିଧାନ ।

ଏହି ପଟ୍ଟଭୂମିରେ 'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ'ର ବାଲେଶ୍ୱର ଜିଲ୍ଲା ଶାଖା ଏକ ତଥ୍ୟାନୁସନ୍ଧାନୀ କମିଟି ପ୍ରେରଣ ପାଇଁ ନିଷ୍ପତ୍ତି ନେଇଥିଲା । ତଥ୍ୟାନୁସନ୍ଧାନୀ କମିଟିର ସଭ୍ୟ ବୃନ୍ଦ ହେଲେ;

୧. ରବିନ୍ଦ୍ର ନାଥ ପ୍ରଧାନ / ପୂର୍ବତନ ରାସାୟନ ବିଜ୍ଞାନର / ପ୍ରାଧ୍ୟାପକ ଓ ଅଧକ୍ଷ (ଫୁଲବାଣୀ ମହାବିଦ୍ୟାଳୟ)

୨. ଡ. ଅଶୋକ କୁମାର ପାଣିଗ୍ରାହୀ (ପରିବେଶବିତ୍, ଫକିର ମୋହନ ବିଶ୍ୱବିଦ୍ୟାଳୟ)

୩. ଡ. ପ୍ରମୋଦ କୁମାର ପଣ୍ଡା (ସମାଜବିଜ୍ଞାନୀ ଓ ପୂର୍ବତନ ଅଧକ୍ଷ ଫକୀର ମୋହନ ମହାବିଦ୍ୟାଳୟ)

୪. ଇଂ ମନ୍ମଥନାଥ ମହାପାତ୍ର (ଜିୟୋଲୋଜିଷ୍ଟ, ଖଡ଼ଗପୁର ଆଇ.ଆଇ.ଟିର ପୂର୍ବତନ ଛାତ୍ର)

୫. ବସନ୍ତ ଲତା ପଟ୍ଟନାୟକ (ଆଇନ୍‌ଜୀବୀ)

୬. ପ୍ରତାପ ଚନ୍ଦ୍ର ନାୟକ, ଆବାହକ, ଗଣତାନ୍ତ୍ରିକ ଅଧିକର ସୁରକ୍ଷା ସଂଗଠନ, ବାଲେଶ୍ୱର ଜିଲ୍ଲା ଓ ପୂର୍ବତନ ବ୍ୟାଙ୍କ ଅଧିକାରୀ ।

୭. ପଞ୍ଚାନନ ପରିଡ଼ା (ସମ୍ପାଦକ, ଦଳିତ ବାର୍ତ୍ତା ଓ ଆଇନଜୀବୀ)

୮. ଶମ୍ଭୁନାଥ ମହାନ୍ତି (ଆଇନଜୀବୀ)

୯. ଲକ୍ଷ୍ମୀଧର ବେହେରା (ସମ୍ପାଦକ, ବାଲେଶ୍ୱର ଜିଲ୍ଲା ବରିଷ୍ଠ ନାଗରିକ ମଞ୍ଚ)

୧୦. ଗୌରାଙ୍ଗ ପାଣିଗ୍ରାହୀ (ସମାଜସେବୀ)

ତା ୨୧.୯.୨୦୧୩ ତାରିଖରେ ଏହି ତଥ୍ୟାନୁସନ୍ଧାନୀ ଗୋଷ୍ଠୀ ଉକ୍ତ ଅଞ୍ଚଳର ତଥ୍ୟ ସଂଗ୍ରହ ଏବଂ ଅନୁଧ୍ୟାନ କରିବା ପାଇଁ ଗସ୍ତ କରି 'ଜନଜୀବନ ସୁରକ୍ଷା'ମଞ୍ଚର କର୍ମକର୍ତ୍ତା ଓ ଉପସ୍ଥିତ ବହୁ ପ୍ରଭାବିତ ଓ ବିସ୍ଥାପିତ ଲୋକଙ୍କୁ ସାକ୍ଷାତ କରିଥିଲେ । ଏମାନଙ୍କ ନିକଟରୁ ନିମ୍ନଲିଖିତ ତଥ୍ୟ ଓ ଅଭିଯୋଗ ଗୁଡ଼ିକ ଅବଗତ ହୋଇ ପ୍ରତ୍ୟକ୍ଷ ଅନୁଧ୍ୟାନ ଓ ସମୀକ୍ଷା ମଧ୍ୟ କରିଥିଲେ । ବାଲେଶ୍ୱର ଏଲଏଜ୍‌ର କର୍ମକର୍ତ୍ତାଙ୍କ ସହିତ ମଧ୍ୟ ଆଲୋଚନା କରି କମ୍ପାନୀର ପ୍ରତିକ୍ରିୟା ଜାଣିଥିଲେ ।

**ଅନୁସନ୍ଧାନ ଓ ସମୀକ୍ଷା :**

ବାଲ ଗୋପାଳପୁର ଶିଳ୍ପାଞ୍ଚଳ କହିଲେ ମୁଖ୍ୟତଃ ଏମାମି ପେପର ମିଲ୍ ଏବଂ ବାଲେଶ୍ୱର ଏଲଏଜର ଅବସ୍ଥିତିକୁ ବୁଝାଏ । ଏହି ଅଞ୍ଚଳରେ ଜନଜୀବନ ଉପରେ କୁପ୍ରଭାବ ସମ୍ପର୍କରେ ତଥ୍ୟାନୁସନ୍ଧାନକାରୀ ଦଳ ତଥ୍ୟ ସଂଗ୍ରହ କରିଥିଲେ । ଦଳର ଅନୁସନ୍ଧାନ ମୁଖ୍ୟତଃ ପ୍ରତ୍ୟକ୍ଷ ବିସ୍ଥାପନ, ପରୋକ୍ଷ ବିସ୍ଥାପନ ଓ ପରିବେଶ ପ୍ରଦୂଷଣ ଉପରେ ପର୍ଯ୍ୟବେସିତ ଥିଲା ।

**ପ୍ରତ୍ୟକ୍ଷ ବିସ୍ଥାପନ :**

ଏହି ଶିଳ୍ପାଞ୍ଚଳରେ ବିସ୍ଥାପନ ସମସ୍ୟାର ଏକ ଲମ୍ବା ଇତିହାସ ରହିଛି । ପୂର୍ବ ପାକିସ୍ତାନୀ ଶରଣାର୍ଥୀ ମାନଙ୍କଥଇଥାନ ପାଇଁ କେନ୍ଦ୍ରସରକାରଙ୍କର ସହାୟତାରେ ବାଲେଶ୍ୱର ସହର ନିକଟସ୍ଥ ବିଭିନ୍ନ ଗ୍ରାମଗୁଡ଼ିକରେ ପ୍ରାୟ ପାଞ୍ଚଶହ ଏକର ଜମି ଚିହ୍ନଟ କରାଯାଇ ଶରଣାର୍ଥୀ ମାନଙ୍କୁ ପ୍ରଦାନ କରାଯାଇଥିଲା । ୧୯୯୨ ମସିହା ବେଳକୁ ଏହି ଶରଣାର୍ଥୀ ମାନଙ୍କୁ ବାସ କରୁଥିବା ଜାଗା ଚାଷଜମିର ସ୍ଥାୟୀ ପଟ୍ଟା ପ୍ରଦାନ କରାଯାଇଥିଲା । ୧୯୮୦ ଦଶକରେ ରାଜ୍ୟସରକାରଙ୍କ ତରଫରୁ ଏମାମି ପେପର ମିଲ ଓ ବାଲେଶ୍ୱର ଏଲଏଜକୁ ପରବର୍ତ୍ତୀ ସମୟରେ ନିଜର କାରଖାନା ପ୍ରତିଷ୍ଠା ପାଇଁ

ଏହି ଅଞ୍ଚଳରେ ଇଡ୍କୋ ଦ୍ୱାରା ଜମି ଅଧିଗ୍ରହଣ କରାଯାଇ ଯେଉଁ ଜମି ଦିଆଗଲା ସେଥିରେ ଗୋଚର ଜମି ରହିଥିବା କଥା ସ୍ଥାନୀୟ ବାସିନ୍ଦା ଅଭିଯୋଗ କରନ୍ତି । ପରେ ନିଜର କାୟା ବୃଦ୍ଧି ନିମିତ୍ତ ଏମାମି ପେପର ମିଲ ସଂଲଗ୍ନ ଅଞ୍ଚଳରେ ପ୍ରାୟତଃ ତିନିଶହ ଏକର ଜମି ଏବଂ ବାଲେଶ୍ୱର ଏଲଏକ୍ କାରଖାନା ସଂଲଗ୍ନ ଦୁଇଶହ ପଚାଶ ଏକର ଜମି ଜମିମାଲିକମାନଙ୍କ ଠାରୁ କିଣିନେଲେ । ଏହି ଜମି କ୍ରୟ ନିମିତ୍ତ ଉପଯୁକ୍ତ ମୂଲ୍ୟ ଜମିମାଲିକ ମାନଙ୍କୁ ଦିଆଯାଇ ନାହିଁ ବୋଲି ମଞ୍ଚ ତରଫରୁ ଅଭିଯୋଗ କରାଯାଏ । ଏହା ଫଳରେ ସତୁରୀଟି ପରିବାର ଜମି ହରାଇଛନ୍ତି । ଏମାନେ ସମସ୍ତେ ଦଳିତ ବର୍ଗର । ଏହି ପରିବାରଙ୍କ ଶିଳ୍ପ ସଂସ୍ଥାରେ କୌଣସି ପ୍ରକାରର କର୍ମ ସଂସ୍ଥାନ ଦିଆଯାଇ ନାହିଁ । ଏପରିକି କମ୍ପାନୀ ପ୍ରତିଷ୍ଠା ସମୟରେ ମଧ୍ୟ ବାସଚ୍ୟୁତ ପରିବାରଙ୍କୁ କୌଣସି ପ୍ରକାରରେ ଥଇଥାନ କରାଯାଇ ନାହିଁ କି ଘର ପ୍ରତିଷ୍ଠା ନିମିତ୍ତ କ୍ଷତିପୂରଣ ଓ ସାହାଯ୍ୟ ମଧ୍ୟ ଦିଆଯାଇ ନାହିଁ । ଅଧିକନ୍ତୁ ଏହି ୧୧ଟି ଦଳିତ ପରିବାର ମଧ୍ୟରୁ ଅତି ଗରିବ ୬ଟି ପରିବାରଙ୍କର ଇନ୍ଦିରା ଆବାସ ଯୋଜନାରେ ପାଇଥିବା ଘରଗୁଡ଼ିକୁ ମଧ୍ୟ ପୋଡ଼ି ପାଉଁଶ ଗଦାରେ ପରିଣତ କରାଯାଇଛି । ଏହି ଇନ୍ଦିରା ଆବାସ ଯୋଜନାର ଘର ପୋଡ଼ି ଯାଇଥିବା ଲୋକମାନେ ହେଲେ ବାଲଗୋପାଳପୁର ଗ୍ରାମର ସନାତନ ଜଳଦାସ, ଚାପାତନ ଜଳଦାସ, ପ୍ରହ୍ଲାଦ ସରକାର, ତପନ ସରକାର, ଗୋବିନ୍ଦ ଜଳଦାସ ଓ ଜଗନ୍ନାଥ ଦାସ

**ପରୋକ୍ଷ ବିସ୍ଥାପନ :**

ଏହି ଜମି ହରାଇଥିବା ସତୁରୀ ପରିବାର ମଧ୍ୟରୁ ପ୍ରତ୍ୟକ୍ଷ ଭାବରେ ବିସ୍ଥାପିତ ଓ ବାସଚ୍ୟୁତ ୧୧ଟି ପରିବାର ବ୍ୟତୀତ ଅନ୍ୟ ପରିବାର ଗୁଡ଼ିକ କେବଳ ଅତିକମ୍ କ୍ଷତିପୂରଣ ରାଶି ପାଇନାହାନ୍ତି ନୁହେଁ ସେଥିରୁ କେତେକ ପରିବାର କିଛି ବି କ୍ଷତିପୂରଣ ପାଇନାହାନ୍ତି । ଗୋଟେ ପଟେ ସରକାର ଦେଶର ପ୍ରଗତି ନାମରେ ନବେ ଦଶକ ପରେ ଆର୍ଥିକ ସଂସ୍କାର ଲାଗୁ କରିଛନ୍ତି ଓ ଅନ୍ୟ ପଟରେ ଅଶି ଦଶକରେ ପ୍ରତିଷ୍ଠିତ କମ୍ପାନୀମାନେ ସ୍ଥାନୀୟ ଜନସାଧାରଣଙ୍କୁ ସ୍ୱଚ୍ଛଳ କରିବା ବଦଳରେ ସେମାନଙ୍କ ଜମି ହଡ଼ପ କରିଚାଲିଛନ୍ତି । ଏହି ପରିପ୍ରେକ୍ଷୀରେ ଗୌରପୁର ଗ୍ରାମର ବାଣ୍ଟୁ ସିଂଙ୍କ ଜମି

ହରାଇବା ବେଢ଼ି ଉପରେ କୋରଡ଼ା ମାଡ଼ ସଦୃଶ ଅଟେ । ସେହି ଗୌରପୁର ଗ୍ରାମର ବାଣ୍ଟୁ ସିଂ ଓ ମନୁ ସିଂକୁ ଏହି ତଥ୍ୟାନୁସନ୍ଧାନୀ ଗୋଷ୍ଠୀ ଭେଟି ଜାଣିବାକୁ ପାଇଥିଲା ଯେ ତାଙ୍କର ୪୯ ଡିସ୍‌ମିଲ ଜମି 'ବାଲେଶ୍ୱର ଏଲଏଜ୍'ର ସ୍ଲାଗ୍ ଗୁଣ୍ଡରେ ପୋତି ହୋଇଯାଇଛି । ଏହି ଦୁଇଜଣ କୌଣସି କ୍ଷତି ପୂରଣ ସରକାର ବା କମ୍ପାନୀ ଠାରୁ ପାଇନଥିବା ଅନୁସନ୍ଧାନୀ ଗୋଷ୍ଠୀ ଆଗରେ ଅଭିଯୋଗ କରନ୍ତି । ଜବରଦସ୍ତି ଜମି ଚାଲିଯିବା ତାଙ୍କର ଜୀବନ ଓ ଜୀବିକାକୁ ପ୍ରଭାବିତ କରିଛି । ବାଟି ଟାଙ୍କି ଗ୍ରାମର ସନାତନ ଜଳଦାସ ଏହି ଗୋଷ୍ଠୀ ଆଗରେ ପ୍ରକାଶ କରନ୍ତି ଯେ, ସେ ଏହି ଶିଳ୍ପାୟନ ଫଳରେ ଜମି ଓ ଚାଷ ହରାଇ ଏକ କ୍ଷୁଦ୍ର ଚାଷୀରୁ ସେ ଏବେ ଜମିହୀନ ଶ୍ରମିକରେ ପରିଣତ ହୋଇଯାଇଛନ୍ତି ।

ଅଧିକନ୍ତୁ ବାଳଗୋପାଳପୁର ଗ୍ରାମର ୫୦ ଏକରରୁ ଉର୍ଦ୍ଧ୍ୱ ଗୋଚର ଜମି, ଶ୍ମଶାନ ଓ ମନ୍ଦିର ମଧ୍ୟ ଏହି ଶିଳ୍ପସଂସ୍ଥା ମାନେ ବିଶେଷତଃ ବାଲେଶ୍ୱର ଏଲଏଜ୍ ଦଖଲ କରିନେଇଛି । ଏହି ଗୋଷ୍ଠୀ ସମ୍ପତ୍ତି (community property) ର କ୍ଷତି ସେମାନଙ୍କ ଆର୍ଥିକ ସ୍ଥିତି ଯେମିତିକି ଗୋପାଳନ ଆଦି ଧନ୍ଦା ଉପରେ ମଧ୍ୟ କୁପ୍ରଭାବ ପକାଇଛି । ଏତଦ୍ ବ୍ୟତୀତ, ପ୍ରଦୂଷଣ ମଧ୍ୟ ରୋଜଗାର ଏବଂ କର୍ମ ସଂସ୍ଥାନକୁ ପ୍ରଭାବିତ କରିଛି ।

**ପରିବେଶ ପ୍ରଦୂଷଣ :**

ଏହି ଶିଳ୍ପସଂସ୍ଥା ମାନଙ୍କର ପ୍ରଦୂଷଣ ପଡ଼ୋଶୀ ଗ୍ରାମ ଗୁଡ଼ିକର ପରିବେଶ, ଜନସ୍ୱାସ୍ଥ୍ୟ ଓ କୃଷି ଉପରେ ଭୟଙ୍କର କୁପ୍ରଭାବ ସୃଷ୍ଟି କରିଛି । ଏହି ତିନୋଟି ସଂସ୍ଥା ମଧ୍ୟରୁ ଏମାମି ପେପର ମିଲ୍ ଉଚ୍ଚ ପ୍ରଦୂଷଣକାରୀ (Highly Poluting) ସଂସ୍ଥା ହେଲାବେଳେ ବିର୍ଲା ଟାୟର୍ସ ଓ ବାଲେଶ୍ୱର ଏଲଏଜ୍ ପ୍ରାନ୍ତିକ ପ୍ରଦୂଷଣକାରୀ ବୋଲି ପ୍ରଫେସର ରାଜେନ୍ଦ୍ର କିଶୋର ରାୟ[୧] ତାଙ୍କର ୟୁଜିସି ପ୍ରୋଜେକ୍ଟ ରିପୋର୍ଟରେ ପ୍ରଦର୍ଶନ କରିଛନ୍ତି । ତାଙ୍କ ମତରେ ଏହି ଶିଳ୍ପସଂସ୍ଥା ମାନଙ୍କ ଦ୍ୱାରା ହେଉଥିବା ପ୍ରଦୂଷଣ ତିନି ପ୍ରକାରର, ଯଥା- ଜଳ ପ୍ରଦୂଷଣ, ବାୟୁ ପ୍ରଦୂଷଣ ଓ ବର୍ଜ୍ୟ ଜନନ (waste generation) । ଏହି ଶିଳ୍ପସଂସ୍ଥା ମାନଙ୍କ ଦ୍ୱାରା ଉତ୍ପନ୍ନ ବର୍ଜ୍ୟ ଏବଂ ପ୍ରଦୂଷଣ ସମ୍ପର୍କରେ ବାଲେଶ୍ୱରର ସୁନାମଧନ୍ୟ ବିଶେଷଜ୍ଞ ଡ. ଚୌଧୁରୀ ସତ୍ୟବ୍ରତ ନନ୍ଦ ତାଙ୍କ ସନ୍ଦର୍ଭରେ[୨]

ଏହି ବର୍ଜ୍ୟମାନଙ୍କ ମଧ୍ୟରେ କୋଇଲା ପାଉଁଶ, ଫ୍ଲାଏ ପାଉଁଶ (fly ash), ଅଙ୍ଗାର (cinder) ଧାତବୀୟ ମଇଳା (Slag) ବ୍ୟତୀତ ବହୁ ବିପଦ୍‌ଜନକ ରାସାୟନିକ ଥିବାର ପ୍ରଦର୍ଶନ କରିଛନ୍ତି । ଏମାନଙ୍କ ମଧ୍ୟରେ ଏଓଏକ୍ସ (Adsorable Halaidas) ମିଶ୍ରିତ କାଦୁଅ, ଦସ୍ତା ମିଶ୍ରଣ (zinc compound), ଗନ୍ଧକ (sulphur), ଅଙ୍ଗାରକ (carbon) ଆଦି ଅନ୍ତର୍ଭୁକ୍ତ ।

**ଜଳ ପ୍ରଦୂଷଣ :**

ଏମାମି ପେପରସ୍ କାରଖାନାରୁ ଅନବରତ ନିର୍ଗତ ଓ ନିଷ୍କାସିତ ହେଉଥିବା ବିଷାକ୍ତ ଦୁର୍ଗନ୍ଧଯୁକ୍ତ ଜଳରାଶି ନିକଟବର୍ତ୍ତୀ ସପନା ନାଳକୁ ବିନା ବିଶୋଧନରେ ପ୍ରବାହିତ ହେଉଛି । ସପନା ନାଳ ଚକୁଳିଆଠାରେ ସୋନ ନଦୀରେ ମିଶିଛି । ସୋନନଦୀ ବୁଢ଼ାବଳଙ୍ଗ ନଦୀ ସହିତ ପାଞ୍ଚ ନମ୍ବର ଜାତୀୟ ରାଜପଥରେ ଥିବା ଏକ ପୋଲ ସନ୍ନିକଟ ତେମୁହାଣିଠାରେ ମିଶିଛି । ଏମାମି ପେପରସ୍ ଓ ବାଲେଶ୍ୱର ଏଲଏଜ୍ କାରଖାନା ଦ୍ୱୟରୁ ନିର୍ଗତ ଦୂଷିତ ଜଳ ସପନା ନାଳ ସମେତ ସୋନ ନଦୀ, ବୁଢ଼ାବଳଙ୍ଗ ନଦୀ କୂଳ ଅଞ୍ଚଳରେ ଅବସ୍ଥିତ ବାଳଗୋପାଳପୁର, ସିରେଇପୁର, ହଳୁପାଟଣା, ନୂଆ ପୋଖରୀ, ଚକୁଳିଆ, ଖୁଣ୍ଟିପାଳ, ନୂଆଗାଁ, ବାଲିପାଳ, ହାତିଆଗଣ୍ଡ, ମୁକୁନ୍ଦପୁର, ପଣ୍ଡାସାହି, ଜଗନ୍ନାଥ ପୁର, କଅଁରାଳି, ମହାନ୍ତିପଡ଼ା, ମନ୍ଦାରପୁର, ଉଡ଼ମ୍ବର, ଦୋଳଗହିରା, କାଠସିଙ୍ଗଡ଼ା, ଦୁମୁଦା ଓ ଫୁଲାଡ଼ି ଆଦି ଗାଁ ଗୁଡ଼ିକ ସହିତ ବାଲେଶ୍ୱର ସହର ତଳି ଅଞ୍ଚଳର ଘନ ଜନବସତିକୁ ପ୍ରଭାବିତ କରୁଛି । ଏହି ଅଞ୍ଚଳ ବାସିନ୍ଦା, ଗୋ ସମ୍ପଦ, ଗୃହପାଳିତ ପଶୁ ଏହି ନଦୀ ନାଳର ଜଳକୁ ଦୈନନ୍ଦିତ ବ୍ୟବହାର କରିଆସୁଛନ୍ତି । କାରଖାନା ପ୍ରତିଷ୍ଠା ହେବା ପରେ ପ୍ରଦୁଷିତ ଜଳ ଏହି ଅଞ୍ଚଳବାସୀଙ୍କର ସର୍ବନାଶର କାରଣ ହୋଇଛି । ସ୍ଥାନୀୟ ଗ୍ରାମବାସୀ ଉତ୍କଟ ଚର୍ମରୋଗ, ଉଦରରୋଗରେ ପୀଡ଼ିତ ହେବା ସହିତ ଗୋମହିଷାଦି ପଶୁଗୁଡ଼ିକ ମଧ୍ୟ ବ୍ୟାଧିଗ୍ରସ୍ତ ହୋଇଛନ୍ତି । ଦୂଷିତ ଜଳ ପ୍ରବାହିତ ହେଉଥିବା ଚାଷ ଜମିରେ ପ୍ରତିକୂଳ ଅବସ୍ଥା ସୃଷ୍ଟି କରିଛି । ପ୍ରଦୂଷଣ ଜନିତ କାରଣରୁ ଲୋକେ ଚକ୍ଷୁ ରୋଗରେ ଆକ୍ରାନ୍ତ ମଧ୍ୟ ହେଉଛନ୍ତି ।

ଏହି ଜଳ ପ୍ରଦୂଷଣ ପ୍ରକ୍ରିୟାର ସବିଶେଷ ବର୍ଣ୍ଣନା କରି ଡ. ନନ୍ଦ ତାଙ୍କ ସନ୍ଦର୍ଭରେ ନିମ୍ନମତେ ମତ ପୋଷଣ କରିଛନ୍ତି ।

"ଏହି ଶିଳ୍ପ ସଂସ୍ଥା ମାନଙ୍କର ବର୍ଜ୍ୟଗୁଡ଼ିକ ସପନା ନାଳକୁ ନିଷ୍କାସିତ ହୋଇ

ପରେ ସୋନନଦୀକୁ ପ୍ରବାହିତ ହୁଏ । ଅନ୍ୟ କିଛି ବର୍ଜ୍ୟ କାରଖାନା ପରିସର ମଧ୍ୟରେ ଗଦା ହୋଇଥାଏ । ଏହାର ସ୍ରୋତ ଗୁଡ଼ିକ ବର୍ଷାଜଳ ସହିତ ମିଶି ଅନ୍ୟସବୁ ଜଳରାଶିକୁ ଦୂଷିତ କରେ, ବର୍ଜ୍ୟ ମାନଙ୍କର ଛିଦ୍ର ଜଳଧାରା ମଧ୍ୟ ଜମି, ମୃତ୍ତିକା ଓ ଭୂତଳ ଜଳକୁ ଦୂଷିତ କରିଥାଏ ।

("These different industrial wastes are discharged outside like Spapana nalla which ultimately meets river Sono and some are staked inside factory premises, effluents also mix with rain water and insearses the chances of leaching which further contaminates nearby water bodies. The waste water generated from leakage also contaminates soil and ground water.")

**ବାୟୁ ପ୍ରଦୂଷଣ :**

ଶିଳ୍ପସଂସ୍ଥା ବିଶେଷତଃ ଏମାମି ପେପର ମିଲ୍‌ର ପଚା କାଦୁଅ ଜଳ ସମୀପବର୍ତ୍ତୀ ଅଞ୍ଚଳର ବାୟୁକୁ ଦୁର୍ଗନ୍ଧଯୁକ୍ତ ଏବଂ ଦୂଷିତ କରୁଛି । ବାଲେଶ୍ୱର ଏଲଏଞ୍ଜର ପାଞ୍ଚଟି ଭାଟିରୁ ବାହାରୁଥିବା ଦୂଷିତ ବାୟୁ ମଧ୍ୟ ଏହି ବାୟୁ ପ୍ରଦୂଷଣର ଅନ୍ୟ ଏକ କାରଣ । ଏହାର କ୍ରୋମ ଧାତବ ପଥର (Chrome Ore) ଭାଙ୍ଗିବାର ଗୁଣ୍ଡ ଏବଂ ବର୍ଜ୍ୟ ପାଉଁଶ ଗୁଣ୍ଡ ବାୟୁକୁ ପ୍ରଦୂଷିତ କରୁଛି । ଏହି ଧାତବ ଗୁଣ୍ଡ ବିହିତ ମାନଙ୍କ (prescribed standard) ଘନମିଟର ପ୍ରତି ୧୫୦ ମି.ଗ୍ରା. ସ୍ଥଳେ (150mg/Nm³) ଏହି ଧାତବୀୟ ଗୁଣ୍ଡଗୁଡ଼ିକ ମାନଙ୍କ ସୀମାରୁ ଅଧିକ ବୋଲି ପ୍ରତୀୟମାନ ହୁଏ । ତେବେ ବିଶ୍ୱସନୀୟ ରାସାୟନିକ ପରୀକ୍ଷାଗାରରେ ବିଭିନ୍ନ ଋତୁର ଜଳସଂଗ୍ରହ କରି ଏହାର ପରୀକ୍ଷା କରାଯିବା ଆବଶ୍ୟକ । ତେବେ ରେମୁଣାଠାରୁ ମିତ୍ରପୁର ଯାଉଥିବା ରାସ୍ତାରେ ଯେକୌଣସି ପଥିକ ଏହି ଦୁର୍ଗନ୍ଧ ଏବଂ ବାୟୁମଣ୍ଡଳରେ ଏକ ଘନ ଧୂଆଁ କୁହୁଡ଼ିକୁ ଅନୁଭବ କରିପାରିବ । ପାର୍ଶ୍ୱବର୍ତ୍ତୀ ଗ୍ରାମର ଗଛ ପତ୍ରରେ ଏହି ଗୁଣ୍ଡ ମଧ୍ୟ ଏକ ଆସ୍ତରଣ ସୃଷ୍ଟି କରୁଥିବାର ଦେଖାଯାଏ ।

**ସ୍ୱାସ୍ଥ୍ୟ ସମସ୍ୟା :**

ପ୍ରଦୂଷିତ ବାୟୁ ଓ ଜଳ, ଏବଂ ବର୍ଜ୍ୟବସ୍ତୁର ଅସନ୍ତୋଷ ଜନକ ପ୍ରବନ୍ଧନ ସଂଲଗ୍ନ ଗ୍ରାମ ଗୁଡ଼ିକର ଏକ ପ୍ରକାରର ସ୍ୱାସ୍ଥ୍ୟ ସଂକଟ ସୃଷ୍ଟି କରିଛି କହିଲେ ଅତ୍ୟୁକ୍ତି

ହେବନାହିଁ । ବିଭିନ୍ନ ପ୍ରକାରର ଚର୍ମରୋଗ, ଶ୍ୱାସକ୍ରିୟା ସମ୍ବନ୍ଧୀୟ ରୋଗ, ଉଚ୍ଚ ରକ୍ତଚାପ, ରକ୍ତଶୂନ୍ୟତା ଓ ପରାଙ୍ଗପୁଷ୍ଟ ରୋଗ (Parasitic) ଆଦି ବିଭିନ୍ନ ପ୍ରକାରର ରୋଗ ସୃଷ୍ଟିର କାରଣ ହୋଇଛି; ଏପରିକି ପବନରେ ଧାତବୀୟ ଗୁଣ୍ଡଗୁଡ଼ିକ ଲୋକ ମାନଙ୍କ ଚକ୍ଷୁ ରୋଗର କାରଣ ପାଲଟିଛି । ବାଟିଟାଙ୍କି ଗ୍ରାମର ସନାତନ ଜଳଦାସ ଏବଂ ଶତ୍ରୁଘ୍ନ ବୀର ଏହି ବାୟୁରେ ଧାତବୀୟ ଗୁଣ୍ଡର ଶିକାର ହୋଇ ଚକ୍ଷୁ ରୋଗରେ ପୀଡ଼ିତ ହେବା ଏହାର ଦୃଷ୍ଟାନ୍ତ । ତଥ୍ୟାନୁସନ୍ଧାନୀ ଗୋଷ୍ଠୀ ନିକଟରେ ଏହି ଦୁଇଜଣ ତାଙ୍କର ବ୍ୟକ୍ତିଗତ ଅନୁଭବ ବର୍ଣ୍ଣନା କରିଥିଲେ । ଡ. ନନ୍ଦ ଏହି ଅଞ୍ଚଳର ସର୍ବେକ୍ଷଣ କରି (clinical survey) ତାଙ୍କର ସନ୍ଦର୍ଭରେ ଏହି ରୋଗଗୁଡ଼ିକ ଉପରେ ଏକ ସାରଣୀ ପ୍ରସ୍ତୁତ କରିଛନ୍ତି । ଏହା ନିମ୍ନରେ ପ୍ରଦତ୍ତ :

| ରୋଗର | ଲୋକମାନଙ୍କ ମଧ୍ୟରେ ରୋଗ ପୀଡ଼ିତଙ୍କ ପ୍ରତିଶତ — ଶିଳ୍ପାଞ୍ଚଳ ସଂଲଗ୍ନ ଗ୍ରାମ ଗୁଡ଼ିକରେ ପୀଡ଼ିତ ଲୋକମାନଙ୍କର ପ୍ରତିଶତ (ମୋଟ ସଂଖ୍ୟା-୬୨୯୮) | | | | ଶିଳ୍ପାଞ୍ଚଳ ଠାରୁ ଦୂର ଗ୍ରାମ ଗୁଡ଼ିକର ପୀଡ଼ିତ ଲୋକଙ୍କର ପ୍ରତିଶତ (ମୋଟ ସଂଖ୍ୟା-୩୯୯) | | | | ଶିଳ୍ପ ପୀଡ଼ିତ ଶ୍ରମିକଙ୍କର ପ୍ରତିଶତ (ମୋଟ ସଂଖ୍ୟା-୪୫୮) | | | |
|---|---|---|---|---|---|---|---|---|---|---|---|---|
| ନାମ | ପୁରୁଷ | ନାରୀ | ଶିଶୁ | ମୋଟ୍ | ପୁରୁଷ | ନାରୀ | ଶିଶୁ | ମୋଟ୍ | ପୁରୁଷ | ନାରୀ | ଶିଶୁ | ମୋଟ୍ |
| ଚର୍ମରୋଗ | ୩.୫୧ | ୩.୧୨ | ୦.୫୯ | ୭.୨୨ | ୧.୨୫ | ୧.୬୫ | ୦.୬୦ | ୩.୫୦ | ୬.୧୩ | ୧.୧୨ | x | ୭.୨୫ |
| ଶ୍ୱାସକ୍ରିୟା | ୨.୧୦ | ୨.୮୦ | ୧.୪୬ | ୬.୩୬ | ୧.୬୬ | ୧.୧୩ | ୦.୮୬ | ୩.୫୮ | ୧୫.୭୩ | ୧.୩୯ | x | ୧୭.୧୨ |
| ସମ୍ପର୍କିତ ଉଚ୍ଚ | ୮.୭୬ | ୬.୮୦ | xx | ୧୫.୫୬ | ୫.୪୨ | ୨.୪୦ | x | ୭.୮୨ | ୪.୧୩ | ୦.୭୪ | x | ୪.୮୭ |
| ରକ୍ତଚାପ | | | | | | | | | | | | |
| ରକ୍ତହୀନତା | ୭.୯୬ | ୯.୮୦ | ୨.୬୬ | ୨୦.୪୨ | ୬.୧୫ | ୪.୩୬ | ୧.୨୭ | ୧୧.୭ | x | x | x | x |
| ପରାଙ୍ଗପୁଷ୍ଟ ରୋଗ ସମସ୍ୟା | ୧.୦୦ | ୦.୯୮ | ୧.୮୫ | ୩.୮୩ | | ୦.୩୨ | ୦.୬୧ | ୧.୨୭ | ୨.୨୦ | x | x | x |

(Parasitic)

ସେ ଜେଡ୍ (z) ପରୀକ୍ଷା ଆଦି ବିଭିନ୍ନ ପରିସଂଖ୍ୟାନ ପଦ୍ଧତି ସାହାଯ୍ୟରେ ପ୍ରମାଣିତ କରିଛନ୍ତି ଯେ ସମୀପବର୍ତ୍ତୀ ଗ୍ରାମର ଲୋକମାନେ ଏହିସବୁ ରୋଗରେ ପୀଡ଼ିତ ହେବାର ଆଶଙ୍କା ଅଧିକ । ତାଙ୍କର ଭାଷାରେ –

"The association between occurence of disease and distance of the village from the industry were tested by correlation coefficient analysis. It is evident from the analysis that diseases are negatively correlated establishing a strong association between the occurence of the disease with the distance of the village from the industries."

ତାଙ୍କର ପ୍ରସ୍ତୁତ ଏହି ସଂକ୍ରାନ୍ତ ରୋଗ ଓ ଦୂରତ୍ୱ ମଧ୍ୟରେ ସମ୍ପର୍କର ଚିତ୍ର ସାରଣୀ ୧ରେ ପ୍ରଦତ୍ତ ।

ଭୂତଳ ଜଳସ୍ତର ଉପରେ ପ୍ରଭାବ : ଏହି ଶିଳ୍ପାୟନ, ଭୂତଳ ଜଳ ସ୍ତରର ଉଦ୍‌ବେଗଜନକ ପତନର ଆଶଙ୍କା ସୃଷ୍ଟି କରିଛି । ପ୍ରତ୍ୟକ୍ଷ ଅନୁସନ୍ଧାନରୁ ତଥ୍ୟାନୁସନ୍ଧାନୀ ଗୋଷ୍ଠୀ ଅବଗତ ହେଲା ଯେ ବାଲେଶ୍ୱର ଏଲଏଜ୍ ୫ଟି ଟ୍ୟୁବ୍‌ୱେଲ ଏବଂ ଏମାମି ପେପର ମିଲ୍ସ ୨୦ଟି ଟ୍ୟୁବ୍‌ୱେଲ୍ ଦ୍ୱାରା ଭୂତଳ ଜଳକୁ ସଂଗ୍ରହ କରି ସ୍ୱ ଶିଳ୍ପର କାର୍ଯ୍ୟରେ ବ୍ୟବହାର କରୁଛି । ବାଲେଶ୍ୱର ଏଲଏଜ୍ ଉତ୍ତପ୍ତ ଲୌହପିଣ୍ଡକୁ ଶୀତଳି କରଣ ପାଇଁ ଏହି ଜଳ ସାଧାରଣତଃ ବ୍ୟବହାର କରୁଥିବା ବେଳେ, ଏମାମି ତା'ର କଞ୍ଚାମାଲକୁ ପଚାଇବା ଆଦିରେ ଏହି ଜଳ ବ୍ୟବହାର କରିଥାଏ । ଏହି ଟ୍ୟୁବ୍‌ୱେଲ୍‌ଗୁଡ଼ିକ ୨୦୦ ଫୁଟ ପର୍ଯ୍ୟନ୍ତ ଭୂତଳକୁ ଖୋଳାଯାଇଥିବା ହେତୁ, ଏହି ଜଳସଂକଟ ସୃଷ୍ଟି ହେଉଛି ।

ଅନୁସନ୍ଧାନକାରୀ ଗୋଷ୍ଠୀର Geologist ଏମ୍.ଏନ୍.ମହାପାତ୍ରଙ୍କ ତଥ୍ୟ ଅନୁସାରେ ବାଲେଶ୍ୱର ଏଲଏଜ୍ ପ୍ରତ୍ୟେକ ଦିନ ୮୦୦ କ୍ୟୁବିକ୍ ମିଟର ଜଳ ଉତ୍ତୋଳନ କରୁଥିବା ବେଳେ ଏମାମି ପେପର ମିଲ୍‌ର ଉତ୍ତୋଳନର ଦୈନିକ ହାର ପ୍ରାୟତଃ ଏହାର ୪ ଗୁଣ । ଏହି ଟ୍ୟୁବ୍‌ୱେଲ୍‌ର ସ୍ୱଳ୍ପ ଗଭୀରତାରେ କାର୍ଯ୍ୟ କରୁଥିବାରୁ ପାର୍ଶ୍ୱବର୍ତ୍ତୀ ୫ କି.ମି. ପରିଧିର ଗ୍ରାମ ମାନଙ୍କର ବାସିନ୍ଦାଙ୍କର ଆବଶ୍ୟକୀୟ ପାନୀୟଜଳ ଯୋଗାଣକୁ ବିଶେଷ ଭାବରେ ପ୍ରଭାବିତ କରିଛି । ଏହି ଅଞ୍ଚଳରେ ପାନୀୟ ଜଳ ପାଇଁ ଟ୍ୟୁବ୍‌ୱେଲ୍ ଗୁଡ଼ିକ ପ୍ରାୟତଃ ଅକାମି ହୋଇପଡ଼ିଛି । ଫଳରେ ପାନୀୟ ଜଳ ଯୋଗାଣରେ ଗୁରୁତର ସମସ୍ୟା ସୃଷ୍ଟି କରିଛି ।

ଏତଦ୍ ବ୍ୟତୀତ ଏହି ଭୂତଳ ଜଳ ସ୍ତରର ପତନ ଆଗାମୀ ଭବିଷ୍ୟତରେ

ଉଦ୍‌ବେଗଜନକ ପରିସ୍ଥିତି ହେବାର ଆଶଙ୍କା ସୃଷ୍ଟି କରିଛି । ଏହି ପ୍ରସଙ୍ଗରେ ଭାରତୀୟ କୃଷି ଗବେଷଣା ପରିଷଦର ବୈଜ୍ଞାନିକ ଡ. ଦିଲ୍ଲିପ କୁମାର ପଣ୍ଡାଙ୍କ ଗବେଷଣା ବିଶେଷ ଭାବରେ ପ୍ରଣିଧାନ ଯୋଗ୍ୟ । ଡ. ପଣ୍ଡାଙ୍କ ତଥ୍ୟ ଅନୁଯାୟୀ ଉତ୍ତର ବାଲେଶ୍ୱରରେ ଏହି ଭୂତଳ ଜଳସ୍ତର ୬୦% ଖସି ଗଲାଣି । ବାଲେଶ୍ୱର ସହର ବଙ୍ଗୋପସାଗର କୂଳରେ ଅବସ୍ଥିତ ହେତୁ ଭବିଷ୍ୟତରେ ସେସବୁ ସ୍ଥାନରେ ଲୁଣିପାଣି ଭରିଯିବାର ଆଶଙ୍କା ସୃଷ୍ଟି କରୁଛି । ଯଦି ଏହା ହୁଏ ତେବେ ତାହା ଆଗାମୀ ଦିନରେ ପାନୀୟ ଜଳ ସଂକଟ ଓ କୃଷିରେ ଘୋର ଉଦ୍‌ବେଗଜନକ ସ୍ଥିତି କରିବ । (ସମ୍ବାଦ ୨୭.୯.୨୦୧୩)(୩)

**ବାଲେଶ୍ୱର ଏଲଏଜ୍‌ର ପ୍ରତିକ୍ରିୟା ଓ କମ୍ପାନୀ କର୍ତ୍ତୃପକ୍ଷଙ୍କ ସାମାଜିକ ଦାୟିତ୍ୱର ସମୀକ୍ଷା :**

କାରଖାନା ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଉନ୍ନତି ପାଇଁ କେନ୍ଦ୍ର ସରକାରଙ୍କର ନିର୍ଦ୍ଦେଶ ଅନୁସାରେ ସଂପୃକ୍ତ ଶିଳ୍ପ କାରଖାନାର ୨% ଲାଭାଂଶ ଖର୍ଚ୍ଚ କରାଯିବାର ନିର୍ଦ୍ଦେଶନାମା ଥିଲେ ହେଁ କାରଖାନା କର୍ତ୍ତୃପକ୍ଷ ଏ ଦିଗରେ କ'ଣ ପଦକ୍ଷେପ ଗ୍ରହଣ କରିଛନ୍ତି ବୋଲି ତଥ୍ୟାନୁସନ୍ଧାନ ଗୋଷ୍ଠୀ ଜାଣିବାକୁ ଚାହିଁଥିଲେ । ଉତ୍ତରରେ କାରଖାନା କର୍ତ୍ତୃପକ୍ଷ କୁହନ୍ତି ଯେ, ପାର୍ଶ୍ୱବର୍ତ୍ତୀ ଗ୍ରାମରେ ପାନୀୟ ଜଳ ଯୋଗାଣ ପାଇଁ ୧୦ଟି ଟ୍ୟୁବେଲ, ରାସ୍ତାରେ ୧୫ଟି ଲାଇଟ୍ ଏବଂ ୧୫ ହଜାର ବୃକ୍ଷ ରୋପଣ କରାଯାଇଛି । ଏହା ସହିତ ୬୦୦ ରୋଗୀଙ୍କ ପାଇଁ ମାଗଣା ଡାକ୍ତରୀ ଚିକିତ୍ସା ଶିବିର କରାଯାଇଛି ବୋଲି କମ୍ପାନୀ କର୍ତ୍ତୃପକ୍ଷ କୁହନ୍ତି । ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ, ଗତ ଦୁଇବର୍ଷ ତଳେ ବିର୍ଲା ଟାୟାର୍ସ କମ୍ପାନୀ ବନ୍ଦ ହେବାର ପ୍ରତିବାଦରେ ସହରର ବୁଦ୍ଧିଜୀବୀ, ଆଇନ୍‌ଜୀବୀ ଓ ବରିଷ୍ଠ ନାଗରିକଙ୍କର ଆହ୍ୱାନ କ୍ରମେ ଏକ ଖୋଲା ମଞ୍ଚର ଆୟୋଜନ କରାଯାଇଥିଲା । ସ୍ଥାନୀୟ ଶିଳ୍ପ କାରଖାନାର ଶ୍ରମିକ ସମସ୍ୟା, ପ୍ରଦୂଷଣ ସମସ୍ୟା ଏବଂ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଉନ୍ନୟନ ଦିଗରେ କାରଖାନା କର୍ତ୍ତୃପକ୍ଷମାନଙ୍କର ଭୂମିକା ଉପରେ ବିଶଦଭାବେ ଆଲୋଚନା କରାଯାଇଥିଲା । ଏ ସମ୍ପର୍କରେ ତତ୍କାଳୀନ ଜିଲ୍ଲାପାଳଙ୍କ ସହିତ ଏକ ବିସ୍ତୃତ ଆଲୋଚନା ହୋଇଥିଲା । ଏହି ଆଲୋଚନାରେ ଶିଳ୍ପ କାରଖାନାର କୌଣସି କର୍ତ୍ତୃପକ୍ଷ ଯୋଗ ଦେଇନଥିଲେ । ତିନୋଟି ମୁଖ୍ୟ ସମସ୍ୟା ମଧ୍ୟରୁ ଶ୍ରମିକ ସମସ୍ୟା ଓ ପ୍ରଦୂଷଣ ଜନିତ ସମସ୍ୟା କ୍ରମଶଃ ବିସ୍ଫୋରଣାତ୍ମକ ରପ ନେଇଥିବାର ପରିଲକ୍ଷିତ

ହୋଇଥିଲା । ବାଲେଶ୍ୱରର ସମସ୍ତ ଶିଳ୍ପପତିମାନେ ଏକଜୁଟ୍ ହୋଇ ଶିଳ୍ପ ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଉନ୍ନୟନ ନିମନ୍ତେ ଜିଲ୍ଲାପାଳଙ୍କୁ ଦୀର୍ଘଦିନ ଧରି କୌଣସି ଧନ ଆଦାୟ କରି ଦିଆଇ ଦେଉ ନ ଥିବାର ଅସହାୟତା ତତ୍କାଳୀନ ଜିଲ୍ଲାପାଳ ନିଜେ ପ୍ରକାଶ କରିଥିଲେ । ଏହି ପରିସ୍ଥିତିର କୌଣସି ପରିବର୍ତ୍ତନ ଏବେବି ପରିଲକ୍ଷିତ ହେଉନାହିଁ । ବାଲେଶ୍ୱର ଏଲଏଜ୍ କର୍ତ୍ତୃପକ୍ଷଙ୍କ ସହିତ ଆଲୋଚନାରୁ ସ୍ୱଚ୍ଛ ସୂଚନା ମିଳେ ଯେ ଏହି ଶିଳ୍ପ ସଂସ୍ଥା ଆଞ୍ଚଳିକ ଉନ୍ନତି ପାଇଁ ସରକାରୀ ବିଧି ବ୍ୟବସ୍ଥାକୁ ଅବମାନନା କରି ନିଜ ତରଫରୁ ଲୋକ ଦେଖାଣିଆ ଭାବରେ କିଛି ପଦକ୍ଷେପ ଗ୍ରହଣ କରିଛନ୍ତି ସତ୍ୟ କିନ୍ତୁ ତାହା ଯଥେଷ୍ଟ ନୁହେଁ । ସମସ୍ତ କାର୍ଯ୍ୟ ମଧ୍ୟ ସରକାରୀ ନୀତିନିୟମର ପରିସରରେ ମଧ୍ୟରେ କାର୍ଯ୍ୟକାରୀ ହେବା ଉଚିତ ।

**ଦାବି :**

ଉପରୋକ୍ତ ତଥ୍ୟଗୁଡ଼ିକୁ ଦୃଷ୍ଟିରେ ରଖି ତଥ୍ୟାନୁସନ୍ଧାନୀ ଗୋଷ୍ଠୀ ନିମ୍ନଲିଖିତ ଦାବି ସରକାରୀ କର୍ତ୍ତୃପକ୍ଷଙ୍କ ନିକଟରେ ଉପସ୍ଥାପନା କରୁଛି ।

୧. ସ୍ଥାନୀୟ ଜନସାଧାରଣଙ୍କର ନିଜସ୍ୱ ଜମିକୁ କମ୍ପାନୀମାନେ ଦଖଲ କରିବା ବିଷୟରେ ପୁଙ୍ଖାନୁପୁଙ୍ଖ ସରକାରୀ ତଦନ୍ତ କରାଯାଉ ଏବଂ କ୍ଷତିଗ୍ରସ୍ତ ବ୍ୟକ୍ତିମାନଙ୍କୁ ଉଚିତ କ୍ଷତିପୂରଣ ପ୍ରଦାନ କରାଯାଉ ।

୨. ୧୧ଟି ବାସଚ୍ୟୁତ ପରିବାରର ଉଚିତ ଥଇଥାନ ନିମନ୍ତେ କାର୍ଯ୍ୟପନ୍ଥା ଗ୍ରହଣ କରାଯାଉ । ବିଶେଷତଃ ଇନ୍ଦିରା ଆବାସ ହରାଇଥିବା ୬ଟି ପରିବାରକୁ ନ୍ୟାୟୋଚିତ ଥଇଥାନ ଏବଂ ଇନ୍ଦିରା ଆବାସ ନିର୍ମାଣ ନିମନ୍ତେ ସାହାଯ୍ୟ କରାଯାଉ ।

୩. ବାସଚ୍ୟୁତ, ବିସ୍ଥାପିତ ଓ କ୍ଷତିଗ୍ରସ୍ତ ପରିବାରର ଅନ୍ୟୁନ୍ୟ ଜଣେ ଲେଖାଏଁ ବ୍ୟକ୍ତିକୁ କମ୍ପାନୀରେ କାଳକ୍ରମେ ସ୍ଥାୟୀ ନିଯୁକ୍ତି ଦେବାର ବିହୀତ ବ୍ୟବସ୍ଥା କରାଯାଉ ।

୪. ପ୍ରଦୂଷଣର ହ୍ରାସ ନିମନ୍ତେ ଦୀର୍ଘସ୍ଥାୟୀ ପ୍ରତିକାର କରାଯାଉ ।

୫. ମାତ୍ରାଧିକ ପ୍ରଦୂଷଣ ଓ ଜମି ହଡ଼ପ ଭଳି ଆଇନ୍ ବିରୋଧୀ କାର୍ଯ୍ୟ ପାଇଁ କମ୍ପାନୀ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ କେଶ୍ ରୁଜୁ କରାଯାଇ ଦଣ୍ଡିତ କରାଯାଉ ।

୬. ଭୂତଳ ଜଳସ୍ତରର ପତନକୁ ରୋକିବା ପାଇଁ ଜନସଚେତନତା ସୃଷ୍ଟି କରାଯାଉ । ଶିଳ୍ପ ସଂସ୍ଥାମାନେ ଯେପରି ଜଳସଂରକ୍ଷଣ ଓ ପୁନରାବର୍ତ୍ତନ ବ୍ୟବସ୍ଥା ମାଧ୍ୟମରେ

ଭୂତଳ ଜଳ ବିନିଯୋଗକୁ ହ୍ରାସ କରିବେ ସେଦିଗରେ ସରକାର ତୁରନ୍ତ ପଦକ୍ଷେପ ନିଅନ୍ତୁ ।

୭. ବାୟୁ ପ୍ରଦୂଷଣ ରୋକିବା ପାଇଁ ବିହିତ ପଦକ୍ଷେପ ନିଆଯାଉ ।

୮. ସ୍ଥାନୀୟ ଅଧିବାସୀ ଓ ଜନପ୍ରତିନିଧିଙ୍କ ସହ ଲଗାତର ଆଲୋଚନା କରି ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣରେ ସମସ୍ୟା ସମାଧାନର ପ୍ରଚେଷ୍ଟା ଜାରି ରହୁ ।

**ଉପସଂହାର :**

ବାସ୍ତବରେ ଭାରତରେ ବିକାଶ ନିମିତ୍ତ ବଳପୂର୍ବକ ବିସ୍ଥାପନ ବିଶେଷତଃ ଦଳିତ ଏବଂ ପଛୁଆ ବର୍ଗଙ୍କ ପାଇଁ ପ୍ରାଣଘାତୀ ହୋଇଛି । ସଜଲ ନାଗ(୪)ଙ୍କ ମତରେ ୧୯୯୦ ଦଶାଙ୍କ ସୁଦ୍ଧା ଭାରତରେ ବିକାଶ ନିମିତ୍ତ ବଳପୂର୍ବକ ବିସ୍ଥାପନର ଶିକାର ହୋଇଥିବା ଜନତାର ୬୦%ରୁ ଅଧିକ ହେଉଛନ୍ତି ଆଦିବାସୀ ଓ ଦଳିତ ଶ୍ରେଣୀର । ବାଲଗୋପାଳପୁର ଶିଳ୍ପାୟନ ଏହି ବିନାଶକାରୀ ବିକାଶଧାରାର ଏକ ଚରମ ଉଦାହରଣ କହିଲେ ଅତ୍ୟୁକ୍ତି ହେବନାହିଁ । ବଙ୍ଗୀୟ ଶରଣାର୍ଥୀମାନଙ୍କର ଏହି ଆଶ୍ରୟସ୍ଥଳ ଶିଳ୍ପାୟନ ହେତୁ ଏକ ମରଣ ଯନ୍ତାରେ ପରିଣତ ହୋଇଛି । ସରକାର ଅନ୍ତତଃପକ୍ଷେ ନାଗରିକର ଗଣତାନ୍ତ୍ରିକ ଓ ସାମ୍ବିଧାନିକ ଅଧିକାରକୁ ସମ୍ମାନ ଜଣାଇ ଅଧିକ ଜନମୁଖୀ ହେବେ ବୋଲି ଅନୁସନ୍ଧାନକାରୀ ଗୋଷ୍ଠୀର ଆଶା ।

**ସହାୟକ ଲେଖାସୂଚୀ :**


(୧) Environmental pollution - Legislative enactment and judicial trend : A case study on Balasore ( A UGC minor Research Project, Submitted in 2008) By Prof. Rajendra Kishore Roy.

(୨) Industrial Wealth hazards and environmental management model in industrial belts of north odisha (A case study of Balasore) By Dr. Choudhury Satyabrata Nanda, MBBS (Hons), MD (Medicine)

(୩) 'ଉତ୍ତର ବାଲେଶ୍ୱରରେ ଭୂତଳ ଜଳସ୍ତରର ସ୍ଥିତି ଉଦ୍‌ବେଗଜନକ' ବୈଜ୍ଞାନିକ ଦିଲ୍ଲିପ କୁମାର ପଣ୍ଡା, ଭାରତୀୟ କୃଷି ଗବେଷଣା ପରିଷଦ (ସମ୍ବାଦ ୨୭/୯/୨୦୧୩)

(୪) "Nationhood and Displacement in Indian sub continent' EPW Dec 22, 2001 by Sajal Nag.

# ଶ୍ରମିକଙ୍କ ପାପୁଲି କଟା ଘଟଣା ଓ ଓଡ଼ିଶାର ଦାଦନ ଶ୍ରମିକ

ଅତି ପରିଚୟେ ଗୌରବ ନଷ୍ଟ - ଏକ ପୁରୁଣା ଲୋକ ଉକ୍ତି । ଏ ଉକ୍ତିକୁ ସାମାଜିକ ସନ୍ଦର୍ଭରେ ପ୍ରୟୋଗ କଲେ ଦେଖିବା ଯେକୌଣସି ସମସ୍ୟା ଅତି ସାଧାରଣ ହେଇଗଲେ ଜନମାନସରୁ ଅଦୃଶ୍ୟ ହୋଇଯାଏ ଏବଂ ଗ୍ରହଣୀୟ ମଧ୍ୟ ହୋଇଯାଏ । କିନ୍ତୁ ଏ ଅଦୃଶ୍ୟତା ଓ ଗ୍ରହଣୀୟତାର ବାଡ଼ ଡ଼େଇଁ ଏମିତି କୌଣସି ମର୍ମନ୍ତୁଦ ଓ ନିଷ୍ଠୁର ଘଟଣା ଯେତେବେଳେ ଆମ ସାମ୍ନାରେ ଠିଆହୁଏ, ସେତେବେଳେ ଆମେ ସମସ୍ୟାଟିକୁ ଦେଖିବା ଆରମ୍ଭ କରୁଁ, ଆଲୋଚନା କରିଥାଉଁ - ସତେ ଯେପରି ଆଗରୁ ଏ ସମସ୍ୟା ନ ଥିଲା, ଏବଂ କ୍ଷଣସ୍ଥାୟୀ ହେଲେ ବି, ସମ୍ବୋଧିତ କରିବାକୁ ବାହାରି ପଡୁ । ଶ୍ରମିକ ଦଲାଲମାନେ ମିଶି କଳାହାଣ୍ଡିର ଦୁଇ ଦାଦନ ଶ୍ରମିକଙ୍କ ପାପୁଲି କାଟିଦେବା ଏମିତି ଏକ ଘଟଣା ଥିଲା । ଘଟଣାଟି ଘଟିଥିଲା ୧୭ ଜାନୁଆରୀ ୨୦୧୪ ଦିନ । ଯେତେବେଳେ ଦୁଇ ଶ୍ରମିକ - ନୀଳାମ୍ବର ଧାଙ୍ଗଡ଼ା ମାଝୀ ଓ ଦିଆଲୁ ନିଆଲଙ୍କ ବ୍ୟାଣ୍ଡେଜ୍ ହୋଇଥିବା ପାପୁଲି କଟା ହାତର ଛବି ବୈଦ୍ୟୁତିକ ଗଣମାଧ୍ୟମରେ ପ୍ରସାରିତ ହେଲା, ସେତେବେଳେ ଅନେକଙ୍କ ସୁପ୍ତ ସାମାଜିକ ଚେତନା ଟିକେ ଯେମିତି ହଲଚଲ ହେଲା ଭଳି ମନେହେଲା । ବିଭାଗୀୟ ମନ୍ତ୍ରୀଙ୍କଠାରୁ ଆରମ୍ଭକରି ଭାରତର ସୁପ୍ରିମ୍‌କୋର୍ଟ ତଥା ନାଗରିକ ସମାଜର ଏକ ଗୋଷ୍ଠୀ - ହଠାତ୍ ସମସ୍ତେ ବ୍ୟସ୍ତ ବିବ୍ରତ ନିଜନିଜ ସ୍ତରରେ କିଛି ନା କିଛି କରିବାର ଦେଖାଗଲା ।

ରାଜ୍ୟର ଶ୍ରମ ମନ୍ତ୍ରୀ ପାପୁଲି ହରେଇଥିବା ଦୁଇ ଶ୍ରମିକଙ୍କୁ ଦୁଇ ଲକ୍ଷ ଟଙ୍କା ଲେଖାଏଁ ଅନୁକମ୍ପାମୂଳକ ସହାୟତା ଓ ଘଟଣାରେ ସଂପୃକ୍ତ ଦୋଷୀଙ୍କୁ ଆଇନ୍ ଅନୁଯାୟୀ କଠୋର ଦଣ୍ଡ ଦିଆଯିବ ବୋଲି ଘୋଷଣା କଲେ । ଘଟଣାର ସପ୍ତାହକ ମଧ୍ୟରେ ଜିଲ୍ଲା ପୋଲିସ୍ ସାତ ଜଣ ଅଭିଯୁକ୍ତଙ୍କୁ ଗିରଫ କଲା ଏବଂ ବେଆଇନ୍ ଭାବେ ଦଲାଲମାନଙ୍କ ଦ୍ୱାରା ଚାଲାଣ ହେଉଥିବା ଶ୍ରମିକମାନଙ୍କୁ ଉଦ୍ଧାର କରିବା ପାଇଁ ବିଭିନ୍ନ ସ୍ଥାନରେ

ଚଢ଼ଉ କଲା । ଘଟଣାରେ ହସ୍ତକ୍ଷେପ କରିବା ପାଇଁ ରାଜ୍ୟର କେତେକ ମାନବିକ ଅଧିକାର ସଂଗଠନ ରାଜ୍ୟ ତଥା ଜାତୀୟ ମାନବ ଅଧିକାର କମିଶନଙ୍କ ପାଖରେ ନିବେଦନ କଲେ । କମିଶନ ମଧ୍ୟ ଘଟଣା ସମ୍ପର୍କରେ ରାଜ୍ୟ ସରକାରଙ୍କ ପାଖରୁ ରିପୋର୍ଟ ତଲବ କଲେ । ଜାତୀୟ ଅନୁସୂଚିତ ଜାତି କମିଶନ ଘଟଣାର ଅନୁସନ୍ଧାନ ପାଇଁ କଳାହାଣ୍ଡି ଜିଲ୍ଲା ଗସ୍ତ କଲେ । ଭାରତର ସୁପ୍ରିମ୍‌କୋର୍ଟ ମଧ୍ୟ ନିଜ ଆଡୁ ମାମଲା ରୁଜୁ କରି ରାଜ୍ୟ ସରକାରଙ୍କୁ ରିପୋର୍ଟ ମାଗିଛନ୍ତି । ପ୍ରଶ୍ନ ହେଲା, ଏସବୁ ସତ୍ତ୍ୱେ ନୀଳାମ୍ବର ଧାଙ୍ଗଡ଼ାମାଝୀ ଓ ଦିଆଲୁ ନିଆଲଙ୍କ ପରି ଲକ୍ଷ ଲକ୍ଷ ସଂଖ୍ୟାରେ ଦାଦନ ଖଟିବାକୁ ଯାଇ ଦଲାଲ ଓ ମାଲିକଙ୍କ ଦ୍ୱାରା ବିଭିନ୍ନ ଭାବରେ ଅକଥନୀୟ ନିର୍ଯାତନାର ଶୀକାର ହେଉଥିବା ଶ୍ରମିକମାନଙ୍କ ଜୀବନରେ କିଛି ପରିବର୍ତ୍ତନ ଆସିବ ତ ? ପ୍ରକୃତରେ, ଏ ଦୁଇ ଶ୍ରମିକଙ୍କ ପାପୁଲି କଟା ଘଟଣା ପରେ ମଧ୍ୟ ଦାଦନ ଶ୍ରମିକ ନିର୍ଯାତନାର ଅନେକ ଘଟଣା ଗଣମାଧ୍ୟମରେ ରିପୋର୍ଟ ହେଇସାରିଛି । ତା' ମଧ୍ୟରୁ ଦଶବର୍ଷ ବୟସ ବାଳକ ସୁଶାନ୍ତର ଇଟାଭାଟି ମାଲିକର ମାଡ଼ରେ ହାତ ଭାଙ୍ଗିବା ଘଟଣାଟି ସବୁଠୁଁ ଅମାନବୀୟ । ଏଇଭଳି ଏକ ଗମ୍ଭୀର ସାମାଜିକ ପ୍ରସଙ୍ଗକୁ ବୁଝିବା ପାଇଁ ଓଡ଼ିଶା ପି.ୟୁ.ସି.ଏଲ-ଓଡ଼ିଶା ଉଦ୍ୟମ କରିଥିଲା ।

ପି.ୟୁ.ସି.ଏଲ୍. ଓଡ଼ିଶା ତରଫରୁ ଏକ ଦଳ କଳାହାଣ୍ଡି ଜିଲ୍ଲାର ପିପଲଗଡ଼ା ଓ ନୂଆଗୁଡ଼ା ଗାଁକୁ ଯାଇ ଶ୍ରମିକ ପରିବାର ତଥା ଗାଁ ଲୋକଙ୍କୁ ଭେଟିଥିଲେ ଏବଂ ବୁର୍ଲା ଓ କଟକର ଡାକ୍ତରଖାନାକୁ ଯାଇ ଏଠାରେ ଚିକିତ୍ସିତ ହେଉଥିବା ନିର୍ଯାତିତ ଶ୍ରମିକ ତଥା ସେମାନଙ୍କ ପରିବାର ସଦସ୍ୟମାନଙ୍କୁ ମଧ୍ୟ ଭେଟିଥିଲେ । କଳାହାଣ୍ଡି ଜିଲ୍ଲା ଏଡ଼ିଏମ୍, ଏସ୍‌ପି ଏବଂ ଜିଲ୍ଲା ଓ ରାଜ୍ୟସ୍ତରରେ ଶ୍ରମବିଭାଗ ଅଧିକାରୀଙ୍କ ସହ ଏ ସମ୍ପର୍କରେ ଆଲୋଚନା କରିଥିଲେ । ଏ ସମସ୍ତଙ୍କ ସହ ଆଲୋଚନା ଏବଂ ସରକାରୀ ତଥ୍ୟ ଆଧାରରେ ଏ ବିବରଣୀ ପ୍ରସ୍ତୁତ ହୋଇଛି । ବିବରଣୀଟି ଆରମ୍ଭ ହୋଇଛି ତିନି ନିର୍ଯାତିତ ଶ୍ରମିକଙ୍କ କାହାଣୀରୁ ।

ଯେଉଁ ହାତ ପେଟ ଭରେ : ତିନି ନିର୍ଯାତିତଙ୍କ କାହାଣୀ -

(୧) ଆଦିବାସୀ ସମ୍ପ୍ରଦାୟର ନୀଳାମ୍ବର ଧାଙ୍ଗଡ଼ାମାଝୀ, କଳାହାଣ୍ଡି ଜିଲ୍ଲା ଜୟପାଟଣା ବ୍ଲକ୍ ଅନ୍ତର୍ଗତ ନୂଆଗୁଡ଼ା ଗାଁର ବାସିନ୍ଦା । ସେ ଭୂମିହୀନ । କୃଷି ଶ୍ରମିକ ଭାବେ କାର୍ଯ୍ୟ କରନ୍ତି । ବର୍ଷ ଚାରିମାସ ଗାଁରେ ମଜୁରି ଲାଗନ୍ତି ଏବଂ ବର୍ଷା ଋତୁ ସରିଗଲା ପରେ ଇଟାଭାଟିରେ କାମ କରିବା ପାଇଁ ପରିବାର ସହ ଓଡ଼ିଶା ବାହାରକୁ ଯାଆନ୍ତି । ନୀଳାମ୍ବରଙ୍କ ବାପା ମାଧବ ଧାଙ୍ଗଡ଼ା ମାଝୀଙ୍କ ଦୁଇ ଏକର ଅଣ-ଜଳସେଚିତ ଚାଷ ଜମି । କିନ୍ତୁ ଏ ଜମି ତାଙ୍କ ତିନିପୁଅଙ୍କ ମଧ୍ୟରେ ଏଯାଏଁ ଭାଗବଣ୍ଟା ହେଇନାହିଁ । ଗତ ବର୍ଷ, ନୀଳାମ୍ବର ତାଙ୍କ ସ୍ତ୍ରୀ ମଞ୍ଜୁଳା ଓ ଚାରି ବର୍ଷର ପୁଅକୁ ସାଙ୍ଗରେ ନେଇ ଆନ୍ଧ୍ରପ୍ରଦେଶ ଯାଇଥିଲେ ଇଟାଭାଟିରେ କାମ କରିବା ପାଇଁ । ତାଙ୍କ ବଡ଼ ପୁଅ ଉମେଶକୁ ଗାଁରେ ସମ୍ପର୍କୀୟମାନଙ୍କ ପାଖରେ ଛାଡ଼ି ଯାଇଥିଲେ । ଏ ବର୍ଷ ମଧ୍ୟ ସେମାନଙ୍କ ଯୋଜନା ଥିଲା ସାନପୁଅକୁ ନେଇ ରାଜ୍ୟ ବାହାରକୁ କାମକରିବା ପାଇଁ ଯିବେ ଏବଂ ଗତବର୍ଷ ପରି ବଡ଼ ପୁଅ ଉମେଶ ଗାଁରେ ରହିବ । ଉମେଶ ଷଷ୍ଠ ଶ୍ରେଣୀରେ ପଢ଼େ । ନୀଳାମ୍ବର ଓ ତାଙ୍କ ସ୍ତ୍ରୀ ନିରକ୍ଷର ।

(୨) ଦିଆଲୁ ନିଆଲ୍‌ଙ୍କ ଘର କଳାହାଣ୍ଡି ଜିଲ୍ଲାର ଜୟପାଟଣା ବ୍ଲକ୍‌ର ପିପଲ୍‌ଗୁଡ଼ା ଗାଁରେ । ତାଙ୍କ ବୟସ ଉଣେଇଶ / କୋଡ଼ିଏ ହେବ ଓ ସେ ଦଳିତ ସମ୍ପ୍ରଦାୟର । ତାଙ୍କ ବାପା ମା'ଙ୍କ ଚାରି ପିଲାଙ୍କ ମଧ୍ୟରେ ଦିଆଲୁ ତୃତୀୟ । ଦିଆଲୁଙ୍କ ବାପା ମା' ସମ୍ପୂର୍ଣ୍ଣ ଭୂମିହୀନ, ଏପରିକି ନିଜର ବୋଲି ଘରଡ଼ିହ ବି ନାହିଁ । ପିପଲଗୁଡ଼ା ଗାଁ ମୁଣ୍ଡରେ ସରକାରୀ ଜାଗାରେ କୁଡ଼ିଆ କରି ପିଢ଼ି ପିଢ଼ି ଧରି ରହୁଥିଲେ ମଧ୍ୟ ସେ ଜାଗାର ପଟ୍ଟା ସେମାନଙ୍କ ନାଁରେ ନାହିଁ । ଖାଲି ଦିଆଲୁଙ୍କ ପରିବାର କାହିଁକି, ପିପଲଗୁଡ଼ାର ଏ ଦଳିତ ବସ୍ତିରେ ରହୁଥିବା କୌଣସି ପରିବାରର ବି ଘରଡ଼ିହ ପଟ୍ଟା ନାହିଁ । ଦିଆଲୁଙ୍କ ପରିବାର ପୁରୁଣା ବ୍ୟବହୃତ ପ୍ଲାଷ୍ଟିକ୍ ବସ୍ତାରୁ ସୂତା ବାହାର କରି ସେଥିରେ ଦଉଡ଼ି ବୁଣନ୍ତି ଓ ତାକୁ ବିକି ପରିବାର ଚଳାନ୍ତି । ଦିଆଲୁ ଏଥର ପ୍ରଥମ ଥର ରାଜ୍ୟବାହାରକୁ ଯିବା ଯୋଜନା କରିଥିଲେ । ପିପଲଗୁଡ଼ା ଗାଁର ଏ ଦଳିତ ବସ୍ତିରେ ସମସ୍ତେ ନିରକ୍ଷର । ମାତ୍ର ଦୁଇଟି ପିଲା ପ୍ରାଇମେରୀ ସ୍କୁଲରେ ପଢୁଛନ୍ତି । ଗାଁରେ ଦଳିତଙ୍କ ପ୍ରତି ଜାତି

ବିଦ୍ୱେଷ ଅତି ଉତ୍କଟ । ବସ୍ତିର କେତେକ ଲୋକ କହିଥିଲେ ଯେ ସ୍କୁଲରେ ଦଳିତ ପିଲାଙ୍କ ପ୍ରତି ଉଚ୍ଚ ଜାତିର ପିଲା ଓ ଶିକ୍ଷକ ଦୁର୍ବ୍ୟବହାର ପାଇଁ ଦଳିତ ପିଲାମାନେ ସ୍କୁଲ ଯାଉ ନାହାନ୍ତି । ଏବେ ଯେଉଁ ଦୁଇଜଣ ପିଲା ଯାଉଛନ୍ତି ସେମାନେ ଗାଁ ପାଖ ଆଶ୍ରମ ସ୍କୁଲକୁ ଯାଆନ୍ତି ଯାହା କେବଳ ଆଦିବାସୀ ଓ ଦଳିତ ବର୍ଗ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ।

ଗତ ଡିସେମ୍ବର ମାସରେ ଆନ୍ଧ୍ରପ୍ରଦେଶର ଇଟାଭାଟିରେ କାମ କରିବା ପାଇଁ ଦଲାଲମାନଙ୍କ ଦ୍ୱାରା ନିଆଯାଉଥିବା ଏକ ବାରଜଣିଆ ଶ୍ରମିକ ଦଳରେ ଉଭୟ ନିଳାମ୍ବର ଓ ଦିଆଲୁ ସାମିଲ ଥିଲେ । ଯିବା ରାସ୍ତାରେ, ଅଗ୍ରୀମ ଟଙ୍କା ଦେବାନେବା କଥାକୁ ନେଇ ଦଲାଲ ଓ ଶ୍ରମିକମାନଙ୍କ ମଧ୍ୟରେ ଗଣ୍ଡଗୋଳ ହେଲା ବୋଲି କୁହାଯାଉଛି । ଶ୍ରମିକମାନଙ୍କୁ ଗୋଟିଏ ଜାଗାକୁ କହି ଆଉ ଗୋଟିଏ ଜାଗାକୁ ନିଆଯାଉଥିବା ଯୋଗୁଁ ମଧ୍ୟ ଗଣ୍ଡଗୋଳ ହୋଇଥିଲା ବୋଲି ରିପୋର୍ଟ ହୋଇଛି । ଗଣ୍ଡଗୋଳର ସଠିକ୍ କାରଣ ଜଣାପଡୁନାହିଁ । ପ୍ରକୃତ କାରଣ ଯାହା ହେଇଥାଉନା କାହିଁକି, ନୀଳାମ୍ବର ଓ ଦିଆଲୁଙ୍କ ବ୍ୟତୀତ ଦଳର ଅନ୍ୟ ଶ୍ରମିକମାନେ ଦଲାଲଙ୍କ ଖାପଚରୁ ଖସି ପଳେଇ ଆସିବାରେ ସକ୍ଷମ ହୋଇଥିଲେ । ଶ୍ରମିକମାନେ ପଳେଇଆସିବା ପରେ ଦଲାଲମାନେ ନୀଳାମ୍ବରଙ୍କ ପରିବାର ଲୋକଙ୍କ ପାଖକୁ ଫୋନ୍‌ରେ ଧମକ ଦେବାକୁ ଲାଗିଲେ । ଧମକ ଥିଲା ଯେ ଯଦି ସେମାନେ ଅଗ୍ରୀମ ଟଙ୍କା (ପୁରା ଦଳର ଅଗ୍ରୀମ ଟଙ୍କା ମୋଟ ୨ ଲକ୍ଷ ଟଙ୍କା) ନ ଫେରାନ୍ତି ତେବେ ନୀଳାମ୍ବର ଓ ଦିଆଲୁଙ୍କୁ ଛଡ଼ାଯିବ ନାହିଁ ଏବଂ ଟଙ୍କା ନ ମିଳିଲେ ତାଙ୍କୁ ମାରିଦିଆଯିବ । ଏଭଳି ଧମକ ପ୍ରାୟ ସପ୍ତାହେ ଧରି ଚାଲିଲା । ଶେଷରେ ନୀଳାମ୍ବର ଓ ଦିଆଲୁଙ୍କ ପରିବାର ଡିସେମ୍ବର ୧୩ ତାରିଖରେ କଳାହାଣ୍ଡି ଏସ୍.ପି.ଙ୍କୁ ଲିଖିତ ଭାବେ ଦଲାଲମାନଙ୍କ ଧମକ ବିଷୟରେ ଜଣେଇ ଶ୍ରମିକମାନଙ୍କୁ ଉଦ୍ଧାର କରିବା ପାଇଁ ଅନୁରୋଧ କଲେ । ସେଇଦିନ ସେମାନେ କଳାହାଣ୍ଡି ଜିଲ୍ଲା ଶ୍ରମ ଅଧିକାରୀଙ୍କୁ ମଧ୍ୟ ଘଟଣା ବିଷୟରେ ଜଣେଇଥିଲେ । ଡିସେମ୍ବର ୧୫ ତାରିଖ ରାତିରେ ଦଲାଲମାନେ ନୀଳାମ୍ବର ଓ ଦିଆଲୁଙ୍କ ଗୋଟିଏ ଗୋଟିଏ ହାତର ପାପୁଲି କାଟିଦେଇ ସେମାନଙ୍କୁ ରକ୍ତାକ୍ତ ଅବସ୍ଥାରେ ବଲାଙ୍ଗୀର ଜିଲ୍ଲାର ସିନ୍ଧେକେଲା ନିକଟସ୍ଥ ଜଙ୍ଗଲରେ ଫିଙ୍ଗିଦେଇ ଦେଇଗଲେ । ପରଦିନଟି ଡିସେମ୍ବର ୧୬ ତାରିଖ ସକାଳେ ପାଖ ଗାଁ ଲୋକ

ସେମାନଙ୍କୁ ଦେଖିବାପରେ ଭବାନୀପାଟଣା ସରକାରୀ ଡାକ୍ତରଖାନା ପଠେଇ ଥିଲେ ।

(୩) ଇଟାଭାଟି ମାଲିକଠାରୁ ମାଡ଼ଖାଇଥିବା ୧୦ବର୍ଷ ବୟସ ସୁଶାନ୍ତର ବାପା ମା' ସନ୍ତୋଷ କୁମ୍ଭାର ଓ ଭାନୁମତୀ କୁମ୍ଭାରଙ୍କ ଘର ବଲାଙ୍ଗୀର ଜିଲ୍ଲା ପାଟଣାଗଡ଼ ବ୍ଲକ୍ ଅନ୍ତର୍ଗତ କଦଳୀମୁଣ୍ଡା ଗାଁରେ । ସେମାନେ ଦଳିତ ଏବଂ ନିରକ୍ଷର । ନାମକୁ ମାତ୍ର କିଛି ଚାଷଜମି ଅଛି । ସନ୍ତୋଷ ଓ ଭାନୁମତୀଙ୍କ ଆଉ ଦୁଇ ପୁଅ ଝିଅ ଅଛନ୍ତି । ଏମାନଙ୍କ ମଧ୍ୟରେ ସୁଶାନ୍ତ ସବା ସାନ । ସନ୍ତୋଷଙ୍କ ପରିବାର କିଛି ବର୍ଷ ଧରି ରାଉରକେଲାରେ ରହୁଥିଲେ । ସନ୍ତୋଷ ଦିନମଜୁରିଆ ଭାବେ ଓ ଭାନୁମତୀ ଘରୋଇ କାମକରି ପରିବାର ଚଳଉଥିଲେ । କିଛି ବର୍ଷ ତଳେ ସେମାନେ ଗାଁରେ ସନ୍ତୋଷଙ୍କ ବୁଢ଼ା ବାପାମା'ଙ୍କୁ ଦେଖ୍‌ଭାଲ କରିବାପାଇଁ ନିଜ ଗାଁ କଦଳୀମୁଣ୍ଡା ଫେରିଥିଲେ । ଗାଁରେ କିନ୍ତୁ ସାତ ପ୍ରାଣୀ କୁଟୁମ୍ବକୁ ଚଳେଇବା ପାଇଁ ସନ୍ତୋଷଙ୍କୁ ଯଥେଷ୍ଟ କାମ ମିଳୁ ନ ଥିଲା । ସନ୍ତୋଷଙ୍କ ପରିବାର ବି.ପି.ଏଲ୍. ତାଲିକାଭୁକ୍ତ ହେଇ ନ ଥିଲେ କି ତାଙ୍କୁ ଜବ୍‌କାର୍ଡ଼ ମିଳି ନ ଥିଲା । ସନ୍ତୋଷ ପୁଣି ଥରେ ଗାଁ ବାହାରେ କାମ ଖୋଜିବାରେ ଲାଗିଲେ । ଗତବର୍ଷ ସେ ତାଳଚେର ଅଞ୍ଚଳକୁ ଇଟାଭାଟିରେ କାମ କରିବା ପାଇଁ ଯାଇଥିଲେ । ଏ ବର୍ଷ ତାଙ୍କ ସ୍ତ୍ରୀ ଓ ତିନି ପିଲାଙ୍କୁ ସାଙ୍ଗରେ ନେଇ କର୍ଣ୍ଣାଟକର ଗୁଲବର୍ଗା ଜିଲ୍ଲା ଯାଇଥିଲେ ଇଟାଭାଟିରେ କାମ କରିବା ପାଇଁ ।

କଦଳୀମୁଣ୍ଡା ଗାଁର ଆଉ ତିନି ଦଳିତ ପରିବାର ସହିତ ସନ୍ତୋଷଙ୍କ ପରିବାର ସେପେଟମ୍ବର ୨୦୧୩ରେ ଗାଁ ଛାଡ଼ିଥିଲେ । ବଗଲାବନ୍ଧ ଗାଁର ମୋହନ ନାମକ ଜଣେ ବ୍ୟକ୍ତି ପ୍ରତ୍ୟେକ ପରିବାରକୁ ଇଟାଭାଟିରେ କାମ କରେଇଦେବା ପାଇଁ ଅଗ୍ରୀମ ୨୦୦୦ ଟଙ୍କା ଲେଖାଏଁ ଦେଇଥିଲେ । ଏହାପରେ ମୋହନ ଏ ଶ୍ରମିକମାନଙ୍କୁ ଟିକ୍ରାପଡ଼ା ଗାଁର ଭୁତଲୁ ବେହେରା ନାମକ ଜଣେ ବ୍ୟକ୍ତିର ଜିମା ଦେଇଦେଲେ । ଭୁତଲୁ ବେହେରା ଏ ଦଳକୁ ନେଇ ପହଞ୍ଚେଇଲେ କର୍ଣ୍ଣାଟକର ଗୁଲବର୍ଗା ଜିଲ୍ଲାର ଇଟାଭାଟିରେ । ସେଠି ଏସ୍‌ବିଆଇ ବ୍ରିକ୍ କିଲ୍‌ନ ନାମକ ଏକ ଇଟାଭାଟିରେ ଏ ତିନି ପରବାର କାମ କଲେ । ସେମାନଙ୍କ ଖାଇବା ଖର୍ଚ୍ଚ ବାବଦକୁ ପରିବାର ପିଛା ସପ୍ତାହକୁ ୪୫୦ ରୁ ୫୦୦ ଟଙ୍କା ମିଳୁଥିଲା । କିନ୍ତୁ ୨ମାସ ପର୍ଯ୍ୟନ୍ତ କୌଣସି ମଜୁରି ମିଳି ନ

ଥିଲା । ଶ୍ରମିକମାନେ ଯେବେ ମଜୁରି ମାଗିବା ଆରମ୍ଭ କଲେ, ମାଲିକ ତାଙ୍କୁ ମାଡ଼ ଦେବା ଆରମ୍ଭ କଲା । ଭାଟି ମାଲିକ ପାଖରେ ବନ୍ଧୁକ ଥିଲା ଏବଂ ଶ୍ରମିକମାନେ ତା କଥା ନ ମାନିଲେ ମାରିଦେବ ବୋଲି ଧମକ ଦେଉଥିଲା । ଶ୍ରମିକମାନଙ୍କୁ ଗୋଟେ ପ୍ରକାର ନଜରବନ୍ଦୀ କରି ରଖାଯାଇଥିଲା ଏବଂ ଇଟାଗଢ଼ା ହେଉଥିବା ଜାଗାରୁ ବାହାରକୁ ଯିବାପାଇଁ ଅନୁମତି ମିଳୁ ନ ଥିଲା । ଏମିତି ଦିନେ ସୁଶାନ୍ତକୁ କାମ କରିବା ପାଇଁ ମାଲିକ କହିଲା ଏବଂ ସୁଶାନ୍ତ ମନା କରିଦେଲା । ମାଲିକ ଏହାକୁ ସହଜରେ ଗ୍ରହଣ କରିପାରିଲା ନାହିଁ ଏବଂ ଏକ ଲୁହା ରଡ଼ରେ ସୁଶାନ୍ତକୁ ପିଟିଲା । ପୁଅକୁ ପିଟୁଥିବାର ଦେଖି ସୁଶାନ୍ତର ମା' ଯେତେବେଳେ ଦୌଡ଼ି ଆସିଥିଲେ ତାକୁ ଛଡ଼େଇ ନେବା ପାଇଁ ସେ ମଧ ମାଡ଼ରୁ ରକ୍ଷା ପାଇ ନ ଥିଲେ । ମାଲିକର ମାଡ଼ରେ ସୁଶାନ୍ତର ବାଁ ହାତ ଭାଙ୍ଗି ଯାଇଥିଲା କିନ୍ତୁ ତାକୁ କୌଣସି ଡାକ୍ତରୀ ଚିକିତ୍ସା କରାଗଲା ନାହିଁ । ସୁଶାନ୍ତକୁ ନେଇ ଡାକ୍ତରଖାନା ଯିବାପାଇଁ ମାଲିକର ଅନୁମତି ନ ଥିଲା । ଧୀରେ ଧୀରେ ହାତର ଅବସ୍ଥା ଖରାପ ହେବାରେ ଲାଗିଲା । ଏ ଘଟଣା ସମ୍ପର୍କରେ ଖବର ପାଇ ଓଡ଼ିଶାର ଏକ ସ୍ୱେଚ୍ଛାସେବୀ ସଂଗଠନ କର୍ଣ୍ଣାଟକ ରାଜ୍ୟ ପ୍ରଶାସନର ସହାୟତା ନେଇଥିଲେ ଏବଂ ଶ୍ରମିକମାନଙ୍କୁ ଉଦ୍ଧାର କରି ଓଡ଼ିଶା ଫେରେଇ ଆଣିଥିଲେ । ସେ ଆସିଲାବେଳେ ସେମାନଙ୍କୁ ପ୍ରାପ୍ୟ ମିଳିନଥିଲା । ଓଡ଼ିଶା ଫେରିଲାପରେ ସୁଶାନ୍ତକୁ କଟକ ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଚିକିତ୍ସା କରାଯାଇଛି । କିନ୍ତୁ ସୁଶାନ୍ତର ଭାଙ୍ଗିଯାଇଥିବା ହାତ ଯେ ପୁଣି କାର୍ଯ୍ୟକ୍ଷମ ହେବ ସେ ଆଶା କ୍ଷୀଣ ।

ଦାଦନ ଖଟିବାକୁ ଯାଇଥିବା ଏ ତିନି ଶ୍ରମିକ ପରିବାରଙ୍କ ଦୁର୍ବଳ ସାମାଜିକ ସ୍ଥିତି କୌଣସି ଦୃଷ୍ଟିରୁ ଅନନ୍ୟ ନୁହେଁ । ବରଂ, ପ୍ରତିବର୍ଷ ଦକ୍ଷିଣ-ପଶ୍ଚିମ ଓଡ଼ିଶାରୁ ବାହାର ରାଜ୍ୟର ଇଟାଭାଟିମାନଙ୍କରେ କାମ କରିବା ପାଇଁ ଲକ୍ଷ ଲକ୍ଷ ସଂଖ୍ୟାରେ ଯାଉଥିବା ଶ୍ରମିକଙ୍କ ସାମାଜିକ ସ୍ଥିତିର ଏହା ପ୍ରତିନିଧିତ୍ୱ କରୁଛି । ଏହା ଏକ ବ୍ୟାପକ ଓ ଗଭୀର ସାମାଜିକ-ଅର୍ଥନୈତିକ ଦୁଃସ୍ଥିତିର ପ୍ରତିଫଳନ, ଯାହା ପ୍ରତି ରାଷ୍ଟ୍ର ତଥା ସମାଜ ମୋଟାମୋଟି ଉଦାସୀନ ।

ଓଡ଼ିଶାରେ ଦାଦନ ସମସ୍ୟା : ବାଚନିକ ଓ ଲିଖିତ ଇତିହାସରୁ କିଛି –

ବାଚନିକ ଇତିହାସ କହେ ଯେ ପଶ୍ଚିମ ଓଡ଼ିଶାର ଭୂମିହୀନ ଦଳିତମାନେ ହିଁ ପ୍ରଥମେ ରାଜ୍ୟ ତଥା ରାଜ୍ୟ ବାହାରର ସହରାଂଚଳକୁ କାମ କରିବା ପାଇଁ ଯିବା ଆରମ୍ଭ କରିଥିଲେ । ତା' ପଛରେ କାରଣ ଥିଲା ଗ୍ରାମାଞ୍ଚଳରେ ଦଳିତମାନଙ୍କ ପ୍ରତି ଉତ୍କଟ ଜାତି ବିଦ୍ୱେଷ ଏବଂ ବେରୋଜଗାରୀ । ସେ ଦୃଷ୍ଟିରୁ, ଦଳିତଙ୍କ ପାଇଁ ସହରାଞ୍ଚଳ କେବଳ ରୋଜଗାରର ସୁଯୋଗ ଦେଇ ନ ଥିଲା, ଏଠାରେ ଗାଁର ଘୃଣ୍ୟ ଜାତି ବିଦ୍ୱେଷରୁ ବି କିଛିଟା ମୁକ୍ତି ମିଳିଥିଲା । କିନ୍ତୁ, ୧୯୬୫-୬୬ର ମରୁଡ଼ି ପରେ ବଲାଙ୍ଗୀର ଓ ଆଖପାଖ ଜିଲ୍ଲାରୁ ବହୁସଂଖ୍ୟାରେ ଲୋକ କାମପାଇଁ ବାହାର ରାଜ୍ୟକୁ ଗଲେ । ଏ ପର୍ଯ୍ୟାୟରେ ଅନ୍ୟଜାତିର ଲୋକ ତଥା ଅଳ୍ପ ଜମିଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀ ମଧ୍ୟ ବର୍ଷର ନିର୍ଦ୍ଦିଷ୍ଟ କେତେମାସ ବାହାରକୁ କାମ କରିବା ପାଇଁ ଗଲେ । ପଶ୍ଚିମ ଓଡ଼ିଶାରେ ଏ ସମୟକୁ ଦାଦନ ଋତୁ କୁହାଗଲା । ବଲାଙ୍ଗୀର ଜିଲ୍ଲା ଗେଜେଟିଅରରେ ଉଲ୍ଲେଖ ଅଛି- "ମରୁଡ଼ିଜନିତ ଫସଲ ହାନି ଜିଲ୍ଲାର ଗ୍ରାମୀଣ ଅର୍ଥନୀତିକୁ ଧ୍ୱସ୍ତ କରିଦେଲା । ଜିଲ୍ଲାର ଏକ ବଡ଼ ଜନସଂଖ୍ୟା ଭୂମିହୀନ କୃଷିଶ୍ରମିକ ଥିଲେ ଏବଂ ସମସ୍ତ ପ୍ରକାର କୃଷିକାର୍ଯ୍ୟ ଠପ୍ ହୋଇଯିବା ଫଳରେ ସେମାନେ ଭୟଙ୍କର ଭାବେ ରୋଜଗାରର ପନ୍ଥା ହରେଇଲେ । ଏଇ ଲୋକମାନେ ରୋଜଗାର ଅନ୍ୱେଷଣରେ ରାଉରକେଲା ଓ ଭିଲାଇ ଭଳି ସହର ଓ ଶିଳ୍ପାଞ୍ଚଳକୁ ଯିବାରେ ଲାଗିଲେ ।"

ସାଧାରଣତଃ କୁହାଯାଏ ଯେ ଶ୍ରମିକମାନେ ବାହାର ରାଜ୍ୟକୁ ଯିବାର ଋତୁ ନୂଆଖାଇ ପରଠୁ ଆରମ୍ଭ ହୋଇଥାଏ । ପଶ୍ଚିମ ଓଡ଼ିଶାର ଏକ କୃଷିଭିତ୍ତିକ ଗଣପର୍ବ ନୂଆଖାଇ । ନୂଆଧାନ ଅମଳ ତଥା ନବାନ୍ନ ଭକ୍ଷଣକୁ କେନ୍ଦ୍ରକରି ପାଳିତ ହେଉଥିବା ଏ ପର୍ବ ତିଥି ଅନୁସାରେ ସେପ୍ଟେମ୍ବର ବା ଅକ୍ଟୋବର ମାସରେ ପାଳନ ହୋଇଥାଏ । କେତେକଙ୍କ ମତରେ, ପଶ୍ଚିମ ଓଡ଼ିଶାର ବହୁ ସଂଖ୍ୟାରେ ଦାଦନ ଶ୍ରମିକ ବାହାର ରାଜ୍ୟକୁ ଯିବା ପଛରେ ଏ ନୂଆଖାଇ ପର୍ବ ହିଁ ଅସଲ କାରଣ । ନୂଆଖାଇ ପାଳନ ପାଇଁ ସାଧାରଣତଃ ଗରିବ ଲୋକ ଶ୍ରମିକ ଦଲାଲ / କଣ୍ଟ୍ରାକ୍ଟରମାନଙ୍କ ପାଖରୁ ଋଣ ନେଇଥାନ୍ତି ଏବଂ ତା'କୁ ଶୁଝିବା ପାଇଁ ବାହାର ରାଜ୍ୟକୁ କାମ କରିବାକୁ ଯାଇଥାନ୍ତି ।

ବାସ୍ତବରେ, ଏ ଅଞ୍ଚଳର ଲକ୍ଷ ଲକ୍ଷ ଲୋକଙ୍କ ଜୀବନକୁ ପ୍ରଭାବିତ କରୁଥିବା ଏକ ଗମ୍ଭୀର ତଥା ଜଟିଳ ସାମାଜିକ-ଆର୍ଥିକ ସ୍ଥିତିର ଏହା ଏକ ସହଜ ଓ ସରଳୀ ଉତ୍ତର । ଏକଥା ସତ ଯେ କାମପାଇଁ ବାହାର ରାଜ୍ୟକୁ ଯିବା ପ୍ରକ୍ରିୟାଟି ନୂଆଖାଇ ପରେ ପରେ ଆରମ୍ଭ ହୋଇଥାଏ । କିନ୍ତୁ, ଏହା ଏକ ସଂଯୋଗ ମାତ୍ର । ବାସ୍ତବତା ହେଉଛି ଯେ ନଭେମ୍ବରରୁ ଜୁନ୍ ମାସ ମଧ୍ୟରେ ଭୂମିହୀନ ଲୋକଙ୍କୁ କାମ ଯୋଗେଇବା ଭଳି କୃଷିକାର୍ଯ୍ୟ ଅଣ-ଜଳସେଚିତ ଅଞ୍ଚଳରେ ପ୍ରାୟତଃ ନ ଥାଏ । ଦ୍ୱିତୀୟରେ, ସାଧାରଣତଃ ଢିପ ବା ଆଟୁ ଜମି ଚାଷ କରୁଥିବା କ୍ଷୁଦ୍ର ତଥା ନାମମାତ୍ର ଚାଷୀଙ୍କ ଫସଲ ଅମଳ କାମ ଶୀଘ୍ର ସରିଯାଇଥାଏ ଏବଂ ଏକଥା ବି ସମସ୍ତଙ୍କୁ ଜଣା ଯେ ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନା ଭଳି ସରକାରୀ କାର୍ଯ୍ୟକ୍ରମ ଗୁଡ଼ିକ ବାସ୍ତବ କ୍ଷେତ୍ର ଅପେକ୍ଷା କାଗଜ ପତ୍ରରେ ହିଁ ଅଧିକ କାର୍ଯ୍ୟକାରୀ ହୋଇଥାଏ । ତା' ହେଲେ, ଏ ଲୋକମାନେ ବାହାରକୁ ଜୀବିକା ଅନ୍ୱେଷଣରେ ନ ଯାଇ ଗାଁରେ ରହି କରିବେ କ'ଣ ? ଅପର ପକ୍ଷରେ, ଇଟା ତିଆରି କାର୍ଯ୍ୟଟି ବର୍ଷାଋତୁ ପରେ ଅକ୍ଟୋବର ନଭେମ୍ବର ମାସରେ ଆରମ୍ଭ ହୁଏ ଏବଂ ଏ ସମୟରେ ଇଟାଭାଟି ମାନଙ୍କରେ କାମ କରିବା ପାଇଁ ଶ୍ରମିକଙ୍କ ଚାହିଦା ବଢ଼ିଥାଏ । ସୁତରାଂ, ବାସ୍ତବ ସ୍ଥିତିକୁ ଜାଣିଥିବା ସ୍ଥାନୀୟ ଶ୍ରମିକ ଦଲାଲ ଓ କଣ୍ଟ୍ରାକ୍ଟରମାନେ ନୂଆଖାଇର ସୁଯୋଗ ନେଇଥାନ୍ତି ଶ୍ରମିକ ଶୀକାର କରିବାରେ ।

କଳାହାଣ୍ଡି ଓ ବଲାଙ୍ଗୀର - ଯେଉଁ ଜିଲ୍ଲାରେ ନୀଳାମ୍ବର ଧାଙ୍ଗଡ଼ାମାଝି, ଦିଆଲୁ ନିଆଲ ଓ ସନ୍ତୋଷ କୁମ୍ଭାରଙ୍କ ଘର - ଏ ଦୁଇ ଜିଲ୍ଲାର କେତୋଟି ଖାସ୍ ସାମାଜିକ-ଅର୍ଥନୈତିକ ସୂଚକକୁ ଦେଖିଲେ ଏ ଅଞ୍ଚଳରୁ କାହିଁକି ବାହାର ରାଜ୍ୟକୁ ଯାଉଥିବା ଶ୍ରମିକଙ୍କ ସଂଖ୍ୟା ବଢ଼ି ଚାଲିଛି ତା'ର କିଛିଟା ଆଭାସ ମିଳେ । କଳାହାଣ୍ଡି ଜିଲ୍ଲାରେ ଦଳିତ ଓ ଆଦିବାସୀଙ୍କ ସଂଖ୍ୟା ସମୁଦାୟ ଜିଲ୍ଲା ଜନସଂଖ୍ୟାର ଯଥାକ୍ରମେ ୧୬.୬୭% ଓ ୨୮.୬୫% । ସେହିପରି ବଲାଙ୍ଗୀର ଜିଲ୍ଲାରେ ଦଳିତ ଓ ଆଦିବାସୀଙ୍କ ଅନୁପାତ ଜିଲ୍ଲା ଜନସଂଖ୍ୟାର ଯଥାକ୍ରମେ ୧୬.୯୨% ଓ ୨୧.୬୩% । ଉଚ୍ଚଶିକ୍ଷା କଥା ଦୂରେଥାଉ, ଏ ଦୁଇ ଜିଲ୍ଲାର ସାକ୍ଷରତା ହାର ମଧ୍ୟ ନିରୁତ୍ସାହଜନକ । କଳାହାଣ୍ଡି ଜିଲ୍ଲାରେ

ଦଳିତ ଓ ଆଦିବାସୀଙ୍କ ମଧ୍ୟରେ ସାକ୍ଷରତା ହାର ଯଥାକ୍ରମେ ୪୭.୧୨% ଓ ୩୪.୧୭% ରହିଥିବା ବେଳେ ବଲାଙ୍ଗୀର ଜିଲ୍ଲାରେ ଏହା ୫୩.୫୪% ଓ ୪୩.୬୪%। (ଜନଗଣନା, ୨୦୦୧)

ଉଭୟ ଜିଲ୍ଲାର ଅର୍ଥନୀତି କୃଷିଭିତ୍ତିକ ଏବଂ ମୁଖ୍ୟତଃ ବର୍ଷା ଉପରେ ନିର୍ଭରଶୀଳ। ବଲାଙ୍ଗୀର ଜିଲ୍ଲାରେ ମୋଟ ଚାଷଜମିର ୨୨.୪୨% ଜମିରେ ଖରିଫ ଓ ୫.୫୮% ଜମିରେ ରବି ଚାଷ ପାଇଁ ଜଳସେଚନର ସୁବିଧା ଅଛି। ସେହିପରି କଳାହାଣ୍ଡି ଜିଲ୍ଲାରେ ମୋଟ ଚାଷଜମିର ୫୧.୮୧% ଖରିଫ ଓ ୩୮.୯୪% ଜମିରେ ରବି ଚାଷପାଇଁ ଜଳସେଚନର ସୁବିଧା ଅଛି। (ଡିଷ୍ଟ୍ରିକ୍ଟ ଷ୍ଟାଟିଷ୍ଟିକାଲ୍ ହ୍ୟାଣ୍ଡବୁକ୍, ୨୦୦୯) ତଥାପି, ଶ୍ରମଶକ୍ତିର ଏକ ବଡ଼ ଭାଗ (୭୧.୦୮% ବଲାଙ୍ଗୀରରେ ଓ ୭୯.୯୫% କଳାହାଣ୍ଡିରେ) ଏଥିରେ ନିୟୋଜିତ।

କିନ୍ତୁ, ଉଭୟ ଜିଲ୍ଲାରେ ଜମିକୁ କେନ୍ଦ୍ରକରି ଉତ୍ପାଦନ ସମ୍ବନ୍ଧଗୁଡ଼ିକ ଅସମତୁଲ, ଯେଉଁଠି ଏକ ବଡ଼ ଭାଗ ଚାଷୀ ହେଉଛନ୍ତି କ୍ଷୁଦ୍ର ଓ ନାମମାତ୍ର ଚାଷୀ। ବଲାଙ୍ଗୀର ଜିଲ୍ଲାରେ, ସମୁଦାୟୀ ଚାଷୀଙ୍କ ମଧ୍ୟରେ, ନାମମାତ୍ର ଓ କ୍ଷୁଦ୍ର ଚାଷୀ ହେଉଛନ୍ତି ଯଥାକ୍ରମେ ୪୮.୯୯% ଓ ୩୧.୦୧%। କିନ୍ତୁ, ତାଙ୍କ ଅଧୀନରେ ଥିବା ଚାଷଜମିର ଆୟତନ ସମଗ୍ର ଜମିର ଯଥାକ୍ରମେ ୧୭.୫୭% ଓ ୨୯.୨୧% ଭାଗ। ଅପର ପକ୍ଷରେ, ଜିଲ୍ଲାରେ ମଧ୍ୟମ ଓ ବଡ଼ ଚାଷୀ ୪.୬୭% ଓ ୦.୬୭% ରହିଥିବା ବେଳେ ତାଙ୍କ ଅଧୀନରେ ଥିବା ମୋଟ ଚାଷଜମିର ଆୟତନ ଜିଲ୍ଲାର ମୋଟ ଚାଷଜମିର ଯଥାକ୍ରମେ ୧୯.୧୨% ଓ ୬.୭୧%। ଅର୍ଥାତ୍, ଜିଲ୍ଲାରେ ୮୦% ଚାଷୀଙ୍କ ହାତରେ ୪୬.୭୮% ଚାଷଜମି ରହିଥିବା ବେଳେ ୫% ଚାଷୀଙ୍କ ହାତରେ ୨୫% ଚାଷଜମି ରହିଛି।

କଳାହାଣ୍ଡି ଜିଲ୍ଲାରେ ମଧ୍ୟ ଅନୁରୂପ ସ୍ଥିତି। ଜିଲ୍ଲାରେ ନାମମାତ୍ର ଓ କ୍ଷୁଦ୍ର ଚାଷୀଙ୍କ ଅନୁପାତ ଯଥାକ୍ରମେ ୪୬.୮୪% ଓ ୨୯.୦୩% ଏବଂ ତାଙ୍କ ଅଧୀନରେ ଥିବା ଚାଷଜମିର ଆୟତନ ଯଥାକ୍ରମେ ୧୬.୦୩% ଓ ୨୪.୯୫%। ଅପର ପକ୍ଷରେ, ମଧ୍ୟମ ଓ ବଡ଼ ଚାଷୀଙ୍କ ଅନୁପାତ ଯଥାକ୍ରମେ ୬.୯୩% ଓ ୦.୬୮% ହୋଇଥିବା ବେଳେ ସେମାନଙ୍କ ହାତରେ ମୋଟ ଚାଷଜମିର ଯଥାକ୍ରମେ ୨୪.୬୧% ଓ ୬.୩୦%

ରହିଛି । ଅର୍ଥାତ୍, ୭୫.୮୭% ଚାଷୀଙ୍କ ହାତରେ ମୋଟ ଚାଷଜମିର ୪୦.୯୮% ଜମି ଥିବା ବେଳେ ୭.୬୧% ଚାଷୀଙ୍କ ହାତରେ ୩୦.୯୧% ଜମି ରହିଛି । ଦ୍ୱିତୀୟତଃ, କୃଷିଶ୍ରମିକ ସମ୍ପର୍କିତ ପରିସଂଖ୍ୟାନରୁ ଉଭୟ ଜିଲ୍ଲାରେ ଭୂମିହୀନଙ୍କ ସଂଖ୍ୟା ଯେ କମ୍ ନୁହେଁ ତାହା ଜଣାପଡ଼ିଥାଏ । କଳାହାଣ୍ଡି ଓ ବଲାଙ୍ଗୀର ଜିଲ୍ଲାରେ ମୋଟ ଶ୍ରମଶକ୍ତିର ଯଥାକ୍ରମେ ୫୦.୩୨% ଓ ୪୦.୦୫% ହେଉଛନ୍ତି କୃଷି ଶ୍ରମିକ । (ଷ୍ଟାଟିଷ୍ଟିକାଲ୍ ଆବ୍ଷ୍ଟ୍ରାକ୍ଟ ଅଫ୍ ଓଡ଼ିଶା, ୨୦୦୮) ଶ୍ରମଶକ୍ତିର ଏଇ ଅଂଶଟି ମୁଖ୍ୟତଃ ଦଳିତ ଓ ଆଦିବାସୀଙ୍କୁ ନେଇ ଗଠିତ ଏବଂ ଫସଲ ଅମଳ ପରବର୍ତ୍ତୀ ସମୟରେ ଏଇମାନେ କାମଧନ୍ଦା ନ ପାଇ ବାହାର ରାଜ୍ୟକୁ ଚାଲିଯାଆନ୍ତି କାମ କରିବା ପାଇଁ ।

ଯଦିଓ ଗତ କେତେ ଦଶନ୍ଧିଧରି ଓଡ଼ିଶାର ଶ୍ରମିକ କାମ କରିବା ପାଇଁ ବାହାର ରାଜ୍ୟକୁ ଯିବା ପ୍ରକ୍ରିୟାଟି ଜାରି ରହିଛି ଏହାର ବାସ୍ତବ ସ୍ଥିତି ସମ୍ପର୍କରେ ଜିଲ୍ଲା ସ୍ତରରେ ବା ରାଜ୍ୟ ସ୍ତରରେ ନିର୍ଭରଯୋଗ୍ୟ ତଥ୍ୟ ଉପଲବ୍ଧ ନୁହେଁ । ରାଜ୍ୟ ଶ୍ରମ ବିଭାଗର ରେକର୍ଡ଼ ଅନୁଯାୟୀ ୨୦୧୩ ନଭେମ୍ବର ସୁଦ୍ଧା ରାଜ୍ୟରୁ ମୋଟ ୧୨୦୩୮୧ ଜଣ ଶ୍ରମିକ ରାଜ୍ୟ ବାହାରକୁ କାମ କରିବା ପାଇଁ ଯାଇଥିଲେ । ଏ ମଧ୍ୟରୁ ବଲାଙ୍ଗୀର ଜିଲ୍ଲାରୁ ୩୪୪୦୭ ଏବଂ କଳାହାଣ୍ଡି ଜିଲ୍ଲାରୁ ୩୬୩୬ ଜଣ ଶ୍ରମିକ ଯାଇଥିବାର ରେକର୍ଡ଼ କରାଯାଇଛି । ତେବେ ଲାଇସେନ୍ସ ପ୍ରାପ୍ତ ଶ୍ରମିକ କଣ୍ଟ୍ରାକ୍ଟରମାନେ ଦେଉଥିବା ସୂଚନା ଆଧାରରେ ହିଁ ଶ୍ରମବିଭାଗ ଏ ରେକର୍ଡ଼ ପ୍ରସ୍ତୁତ କରିଥାଏ । କିନ୍ତୁ ବାସ୍ତବତା ହେଉଛି ଯେ ଅଧିକାଂଶ ଶ୍ରମିକ ବିନା ଲାଇସେନ୍ସ ପ୍ରାପ୍ତ ଏକ ଏଜେନ୍ସି ମାନଙ୍କ ଜରିଆରେ ହିଁ ଯାଇଥାନ୍ତି ଏବଂ ସେମାନଙ୍କ ସଂଖ୍ୟା ସରକାରୀ ହିସାବରେ ଦେଖାଯାଇଥିବା ସଂଖ୍ୟାଠାରୁ ବହୁଗୁଣ ଅଧିକ । ବିଭିନ୍ନ ବେସରକାରୀ ଆକଳନ ଅନୁଯାୟୀ ରାଜ୍ୟବାହାରକୁ ଯାଉଥିବା ଶ୍ରମିକଙ୍କ ସଂଖ୍ୟା ପାଖାପାଖି ଦଶ ଲକ୍ଷ ହେବ ଏବଂ ସର୍ବାଧିକ ଗଂଜାମ ଜିଲ୍ଲାର ଗୁଜୁରାଟର ସୁରତ ଅଞ୍ଚଳକୁ ଯାଇଥାନ୍ତି । ପଶ୍ଚିମ ଓଡ଼ିଶାରୁ ରାଜ୍ୟ ବାହାରକୁ ଯାଉଥିବା ଶ୍ରମିକଙ୍କ ସଂଖ୍ୟା ଦୁଇ ଲକ୍ଷ ପାଖାପାଖି ।[୧] ଆନ୍ତର୍ଜାତିକ ଶ୍ରମ ସଂଗଠନ (ଆଇ.ଏଲ୍.ଓ.) ଓ ଓଡ଼ିଶା ସରକାରଙ୍କ ଶ୍ରମ ବିଭାଗ ଦ୍ୱାରା ଚାଲିଥିବା ଏକ ସର୍ଭେ ଅନୁଯାୟୀ କେବଳ ବଲାଙ୍ଗୀର ଜିଲ୍ଲାରେ ୨୯୪୯୬ ପରିବାରଙ୍କୁ ଚିହ୍ନିତ

କରାଯାଇଛି ଯେଉଁ ପରିବାରରୁ ଜଣେ କିମ୍ବା ଏକାଧିକ ସଦସ୍ୟ ବାହାର ରାଜ୍ୟକୁ କାମ କରିବାକୁ ଯାଇଛନ୍ତି ।

ଏ ପୃଷ୍ଠଭୂମିରେ, ଏ ଗମ୍ଭୀର ସମସ୍ୟାକୁ ସମ୍ବୋଧିତ କରିବାରେ ସରକାର କି ପଦକ୍ଷେପ ନେଇଛି, ତା'କୁ ଦେଖିବା ।

**ରାଷ୍ଟ୍ରର ଦାୟିତ୍ୱ : ଆଇନ୍ ପ୍ରଣୟନ ଓ ଯୋଜନାରେ ସୀମିତ**

୧୯୬୫-୬୬ର ମରୁଡ଼ି ଓ ତା' ପରବର୍ତ୍ତୀ ସମୟରେ ଯେତେବେଳେ ବହୁ ସଂଖ୍ୟାରେ ଶ୍ରମିକ ବାହାର ରାଜ୍ୟକୁ କାମ କରିବା ପାଇଁ ଯିବାରେ ଲାଗିଲେ ଶ୍ରମିକମାନଙ୍କ ସ୍ୱାର୍ଥ ସୁରକ୍ଷା ଉଦ୍ଦେଶ୍ୟରେ ଓଡ଼ିଶା ସରକାର ୧୯୭୦ ମସିହାରେ ଏକ ଆଇନ୍ ପ୍ରଣୟନ କରିଥିଲେ- କଣ୍ଟ୍ରାକ୍ଟ ଲେବର (ରେଗୁଲେସନ ଏଣ୍ଡ୍ ଆବୋଲିସନ) ଆକ୍ଟ ୧୯୭୦ । ଏଭଳି ଆଇନ୍ ଆଣିବାରେ ଓଡ଼ିଶା ପ୍ରଥମ ରାଜ୍ୟ ଥିଲା । କିନ୍ତୁ ଯେହେତୁ ଏହା ଏକ ରାଜ୍ୟ ଆଇନ ଥିଲା ଶ୍ରମିକମାନେ ଯେଉଁ ବାହାର ରାଜ୍ୟକୁ କାମ କରିବା ପାଇଁ ଯାଉଥିଲେ ସେସବୁ ରାଜ୍ୟ ଏ ଆଇନକୁ ମାନିବା ପାଇଁ ବାଧ ନ ଥିଲେ । ସେଥିପାଇଁ, ଏକ କେନ୍ଦ୍ରୀୟ ଆଇନ – ଇଣ୍ଟରଷ୍ଟେଟ୍ ମାଇଗ୍ରାଣ୍ଟ ୱାର୍କମେନ୍ (ରେଗୁଲେସନ୍ ଅଫ୍ ଏମ୍ପ୍ଲୟମେଣ୍ଟ ଏଣ୍ଡ କଣ୍ଡିସନ୍ସ ଅଫ ସର୍ଭିସ୍) ଆକ୍ଟ ୧୯୭୯ – ପ୍ରଣୟନ ହେଲା । ଏ ଆଇନରେ ଦାଦନଶ୍ରମିକଙ୍କ ଭଲମନ୍ଦ ଦେଖିବା ଦାୟିତ୍ୱ ବାହାର ରାଜ୍ୟକୁ ଶ୍ରମିକ ଚାଲାଣ କରୁଥିବା ଲାଇସେନ୍ସ ପ୍ରାପ୍ତ ଠିକାଦାର ଏବଂ ସେଠାରେ ଶ୍ରମିକମାନଙ୍କୁ କାମରେ ଲଗାଉଥିବା ମାଲିକମାନଙ୍କ ହାତରେ ନ୍ୟସ୍ତ କରାଗଲା । ଏ ଆଇନାରେ ଏହା ମଧ୍ୟ ଧରି ନିଆଗଲା ଯେ ଶ୍ରମିକମାନେ ଲାଇସେନ୍ସ ପ୍ରାପ୍ତ ଠିକାଦାର ମାଧ୍ୟମରେ ଯାଇଥାନ୍ତି । କିନ୍ତୁ ବାସ୍ତବରେ ସେମିତି ଯେ ହୁଏ ନାହିଁ ତା'ପୂର୍ବ ବର୍ଣ୍ଣିତ ଘଟଣାଗୁଡ଼ିକରୁ ସ୍ପଷ୍ଟ । ପ୍ରକୃତରେ ଅଧିକାଂଶ ଶ୍ରମିକ ଦୁଃସ୍ଥିତିରେ ପଡ଼ି ଲାଇସେନ୍ସ ନ ଥିବା ଠିକାଦାର ମାଧ୍ୟମରେ ଯାଇଥାନ୍ତି । ତା'ଛଡ଼ା, କିଏ ଲାଇସେନ୍ସ ପାଇଥିବା ଠିକାଦାର ଓ କିଏ ନୁହେଁ, ସେ କଥା ସେମାନେ ଜାଣି ନ ଥାନ୍ତି । ସେମାନେ ନିଜ ଗାଁ ବା ପଡ଼ୋଶୀ ଗାଁର କେହି ଆଗରୁ ଥରେ ଦି'ଥର ଦାଦନ ଖଟିବାକୁ ଯାଇଥିବା ଓ ରାସ୍ତାଘାଟ ଜାଣିଥିବା ବ୍ୟକ୍ତି ମାଧ୍ୟମରେ ବି ଯାଇଥାନ୍ତି । ଏମିତି କି ରେଲୱେ ପୋଲିସ୍ ସହିତ ଭଲ ସମ୍ପର୍କ ଥିବା

ଷ୍ଟେସନ୍ ପାଖ ପାନଦୋକାନୀ ମଧ୍ୟ ବେଳେ ବେଳେ ଶ୍ରମିକ ଚାଲାଣରେ ସହାୟକ ହୋଇଥାଏ । (ଅଣ-ଲାଇସେନ୍ସ ପ୍ରାପ୍ତ ଶ୍ରମିକ ଠିକାଦାର ଟ୍ରେନ୍‌ରେ ଶ୍ରମିକ ଚାଲାଣ କଲାବେଳେ ରେଲୱେ ପୁଲିସ୍ କେବେ କେବେ ଅସୁବିଧା କରିଥାଏ ।) ଏଭଳି ଭାବେ ଶ୍ରମିକ ଚାଲାଣର ପୁରା ପ୍ରକ୍ରିୟାଟି ଅଲିଖିତ ଓ ଅଦୃଶ୍ୟ ଭାବେ ଚାଲିଛି ଏବଂ ବିଭିନ୍ନ ସ୍ତରରେ ନିଜସ୍ୱ ଏକ ଆର୍ଥିକ ସ୍ୱାର୍ଥ ମଧ୍ୟ ସୃଷ୍ଟି କରିଛି ।

ଦେଖାଯାଇଛି ଯେ ଆଇନ ପ୍ରଣୟନ ଛଡ଼ା, ଯେତେବେଳେ ବି ପିଲା ବିକ୍ରୀ, ଅନାହାର ମୃତ୍ୟୁ ବା ଦାଦନ ଶ୍ରମିକଙ୍କ ନିର୍ଯାତନାର କରୁଣ କାହାଣୀମାନ ଜାତୀୟ ଗଣମାଧ୍ୟମରେ ଚର୍ଚ୍ଚାକୁ ଆସେ ସେତେବେଳେ ରାଷ୍ଟ୍ର କିଛି ନା କିଛି ସ୍ୱତନ୍ତ୍ର ଯୋଜନା ପ୍ରଣୟନ କରିଦିଏ  ଏବଂ ପରେ ପରେ ଏ ଅଞ୍ଚଳକୁ ଦେଶର ପ୍ରଧାନମନ୍ତ୍ରୀ ଗସ୍ତ କରିଥାନ୍ତି । ଏଇ କ୍ରମରେ ଏ ଅଞ୍ଚଳକୁ ଷାଠିଏ ଦଶକର ଶେଷ ଆଡ଼କୁ ଇନ୍ଦିରା ଗାନ୍ଧୀ, ଅଶୀ ଦଶକରେ ରାଜୀବ ଗାନ୍ଧୀ ଓ ନବେ ଦଶକରେ ପି.ଭି. ନରସିଂହ ରାଓ ଗସ୍ତ କରିଥିଲେ । ସେଇ ସମୟରୁ ଏ ଅଞ୍ଚଳର କ୍ଷୁଧା ଓ ଦାରିଦ୍ର୍ୟ ପ୍ରସଙ୍ଗକୁ ଉଭୟ ରାଜ୍ୟ ଓ କେନ୍ଦ୍ର ସରକାର ଗୁଡ଼ାଏ ଯୋଜନା ମାଧ୍ୟମରେ ସମ୍ବୋଧିତ କରିବାର ପ୍ରୟାସ କରିଛନ୍ତି । ତା ମଧ୍ୟରୁ କେତୋଟି ପ୍ରମୁଖ ଯୋଜନା ହେଲା- ରିଭାଇଜ୍‌ଡ଼ ଲଙ୍ଗ ଟର୍ମ ଆକ୍ସନ ପ୍ଲାନ୍, ବିଜୁ କୃଷକ ବିକାଶ ଯୋଜନା, ୱେଷ୍ଟର୍ଣ୍ଣ ଓଡ଼ିଶା ରୁରାଲ୍ ଲାଇଭ୍‌ଲିହୁଡ୍ ପ୍ରୋଗ୍ରାମ, ଓଡ଼ିଶା ଟ୍ରାଇବାଲ୍ ଏମ୍ପାୱାର୍‌ମେଣ୍ଟ ଏଣ୍ଡ ଲାଇଭ୍‌ଲିହୁଡ୍ ପ୍ରୋଗ୍ରାମ୍ ଇତ୍ୟାଦି । ଏଥି ସହିତ 'ପଶ୍ଚିମ ଓଡ଼ିଶା ବିକାଶ ପରିଷଦ' ମଧ୍ୟ ଗଠନ କରାଯାଇଛି ।

ସାରା ଦେଶରେ ଗ୍ରାମାଞ୍ଚଳର ଦାରିଦ୍ର୍ୟ ସମସ୍ୟାକୁ ସମ୍ବୋଧିତ କରିବାପାଇଁ ୨୦୦୫ ମସିହାରେ କେନ୍ଦ୍ର ସରକାର ବହୁ ପ୍ରଚାରିତ 'ମହାତ୍ମା ଗାନ୍ଧୀ ନିଶ୍ଚିତ କର୍ମନିଯୁକ୍ତି ଆଇନ ପ୍ରଣୟନ' କଲେ । ଏ ଆଇନ ବଳରେ ଗ୍ରାମାଞ୍ଚଳର ଯେକୌଣସି ପରିବାର, ଯିଏ ପ୍ରଚଳିତ ସର୍ବନିମ୍ନ ମଜୁରି ହାରରେ ଅଣ-କୁଶଳୀ ଶାରୀରିକ ଶ୍ରମ କରିବାକୁ ଚାହିଁବେ, ତାଙ୍କୁ ସରକାର ଅତି କମ୍‌ରେ ଶହେଦିନର କାମ ସୁନିଶ୍ଚିତ ଯୋଗେଇ ଦେବେ । ପ୍ରକୃତରେ ଏ ଯୋଜନା କିପରି କାର୍ଯ୍ୟ କରୁଛି, ଏ ରିପୋର୍ଟରେ ଆଲୋଚିତ

ପରିବାରଙ୍କ ଜୀବନୀରୁ  ତା'ର ଏକ ଚିତ୍ର ନିମ୍ନରେ ଦିଆଗଲା ।

ଘଟଣାର ଅନୁସନ୍ଧାନ ବେଳେ ଆମେ ଜାଣିବାକୁ ପାଇଲୁ ଯେ ତିନି ନିର୍ଯ୍ୟାତିତଙ୍କ ପରିବାରରୁ କାହାରିକୁ ହେଲେ ଜବ୍ କାର୍ଡ଼ ମିଳି ନ ଥିଲା । ଏ କଥା ମଧ୍ୟ ଜାଣିବାକୁ ପାଇଲୁ ଯେ ପିପଲ୍‌ଗୁଡ଼ା ଗାଁର ଦଳିତ ବସ୍ତିରେ ରହୁଥିବା ଦଶ/ବାରଟି ପରିବାରର କେହି ଜଣେ ହେଲେ ବି ଜବ୍‌କାର୍ଡ଼ ପାଇ ନ ଥିଲେ । ଅବଶ୍ୟ ପାପୁଲି କଟା ଘଟଣା ଗଣମାଧ୍ୟମରେ ଚର୍ଚ୍ଚା ହେବା ପରେ ଦିଆଲୁ ନିଆଳଙ୍କ ପରିବାରକୁ ଜିଲ୍ଲା ପ୍ରଶାସନ ଜବ୍ କାର୍ଡ଼ଟିଏ ଦେଇଥିଲେ, ଯାହା କି ପିଛିଲା ତାରିଖରେ ଇସ୍ୟୁ ହୋଇଥିଲା ଲୋକ ଲଜ୍ଜାରୁ ନିଜକୁ ବଞ୍ଚେଇବା ପାଇଁ । ସେହିପରି ନୂଆଗୁଡ଼ା ଗାଁର ଜୟ ପରାଭୁଏ ଓ ତାଙ୍କ ସ୍ତ୍ରୀ ଭୂମିସୁତା ପରାଭୁଏଙ୍କ ପରିବାର - ଯିଏକି ନୀଳାମ୍ବର ଓ ଦିଆଲୁଙ୍କ ସହିତ ଗୋଟିଏ ଦଳରେ ଦଲାଲ ଦ୍ୱାରା ନିଆ ହୋଇଥିଲେ - ତାଙ୍କୁ ମଧ୍ୟ ଜବ୍ କାର୍ଡ଼ ମିଳି ନାହିଁ କି ବି.ପି.ଏଲ୍. କାର୍ଡ଼ ମଧ୍ୟ ମିଳି ନାହିଁ । ପରାଭୁଏ ପରିବାର ଆଦିବାସୀ ଓ ଭୂମିହୀନ ହୋଇଥିଲେ ହେଲେ ତାଙ୍କୁ ଏ.ପି.ଏଲ୍. (ଏବଭ୍ ପଭର୍ଟି ଲାଇନ୍) କାର୍ଡ଼ ମିଳିଛି । ନୀଳାମ୍ବର ଧାଙ୍ଗଡ଼ା ମାଝୀଙ୍କ ସହି ଗୋଟିଏ ପଡ଼ାରେ ରହୁଥିବା ଅନ୍ୟଜଣେ ଭୂମିହୀନ ଆଦିବାସୀ ଗୋବର୍ଦ୍ଧନ ଧାଙ୍ଗଡ଼ା ମାଝୀଙ୍କର ମଧ୍ୟ ଜବ୍‌କାର୍ଡ଼ ନାହିଁ । ସେଇ ନୂଆଗୁଡ଼ା ଗାଁର ରତ୍ନାକର ସାହୁ, ଯିଏକି ଭୂମିହୀନ ଓ ଓ.ବି.ସି. ବର୍ଗର, ତାଙ୍କୁ ଜବ୍‌କାର୍ଡ଼ ମିଳି ନ ଥିବା କଥା ଆମକୁ ଜଣେଇ ଥିଲେ । ଆମେ ଭେଟିଥିବା ଗାଁ ଲୋକଙ୍କ କହିବା ଅନୁସାରେ ନୂଆଗୁଡ଼ା ଗାଁରେ ଏମିତି ଅନେକ ଭୂମିହୀନ ଗରିବ ପରିବାର ଅଛନ୍ତି ଯେଉଁମାନଙ୍କୁ ଜବ୍ କାର୍ଡ଼ ମିଳି ନାହିଁ ।

ଅପର ପକ୍ଷରେ, ଯେଉଁମାନଙ୍କୁ ଜବ୍‌କାର୍ଡ଼ ମିଳିଛି, ସେମାନଙ୍କ ଅବସ୍ଥା ଯେ ଖୁବ୍ ଭଲ ତା' ମଧ୍ୟ ନୁହେଁ । କାମ କରି ସାରିଲା ପରେ ଠିକ୍ ସମୟରେ ମଜୁରି ନ ଦେବା ସହିତ ଅନ୍ୟାନ୍ୟ ଅନିୟମିତତା ତଥା ଦୁର୍ନୀତିର ଅଭିଯୋଗ ରହିଛି । ଉଦାହରଣ ସ୍ୱରୂପ, ନୂଆଗୁଡ଼ା ଗାଁର ଜଣେ ମହିଳା ଶ୍ରମିକ ସୁକନ୍ଦ ଧାଙ୍ଗଡ଼ା ମାଝୀ ଅଭିଯୋଗ

କରନ୍ତି ଯେ ଦୁଇ ବର୍ଷ ପୂର୍ବେ ଏକ ସରକାରୀ ନର୍ସରୀରେ ସେ ୧୫ ଦିନ ମୂଲ ଲାଗିଥିଲେ ଯାହାର ମଜୁରି ତାଙ୍କୁ ଆଜି ପର୍ଯ୍ୟନ୍ତ ମିଳି ନାହିଁ । ସୁକନ୍ଦଙ୍କ ସ୍ୱାମୀ ସାଧୁ ଧାଙ୍ଗଡ଼ା ମାଝୀ । ସ୍ଥାନୀୟ ପୋଷ୍ଟ ଅଫିସ୍‌ରେ ତାଙ୍କର ଆକାଉଣ୍ଟ ଅଛି । ତେବେ ୨୦୧୩ ମସିହାରେ ତାଙ୍କ ପାସ୍‌ବୁକ୍‌ରେ ଏମ୍‌ଜିଏନ୍‌ଆର୍ ଇଜିଏ କାମର ମଜୁରି ବାବଦରେ ଟ୩୦୨୪/- ଜମାହୋଇ ଉଠାଣ ମଧ୍ୟ ହେଇଛି କିନ୍ତୁ ତାଙ୍କ ଅଜାଣତରେ । ସାଧୁଙ୍କ କହିବା ଅନୁଯାୟୀ ୨୦୧୩ ମସିହାରେ ତାଙ୍କ ପରିବାରର କେହିହେଲେ ଏମ୍‌ଜିଏନ୍‌ଆର୍ ଇଜିଏ ଯୋଜନାରେ କାମ କରିନାହାନ୍ତି । ଏଭଳି ଘଟଣାରୁ ଏମ୍‌ଜି ଏନ୍‌ଆର୍ ଇଜିଏ ଯୋଜନାର କାର୍ଯ୍ୟକାରୀତାରେ ଦୁର୍ନୀତିର ଗନ୍ଧ ବାରି ହେଉଥିବା ବେଳେ ଏହା ଅଧିକ ଅନୁସନ୍ଧାନର ଅପେକ୍ଷା ରଖେ । ଉଲ୍ଲେଖନୀୟ ଯେ ଓଡ଼ିଶାରେ ଏମ୍‌ଜିଏନ୍‌ଆର୍‌ଇଜିଏ ଯୋଜନାର କାର୍ଯ୍ୟକାରୀତାରେ ବ୍ୟାପକ ଦୁର୍ନୀତି ହୋଇଥିବାର ଅଭିଯୋଗ କରି ସେଣ୍ଟର ଫର୍ ଏନ୍‌ଭିରୋନ୍‌ମେଣ୍ଟ ଏଣ୍ଡ ଫୁଡ୍ ସିକ୍ୟୁରିଟି ନାମକ ଏକ ସେଚ୍ଛାସେବୀ ସଂଘଦ୍ୱାରା ଦାୟର ହୋଇଥିବା ଏକ ଜନସ୍ୱାର୍ଥ ମାମଲାର ବିଚାର କରି ସୁପ୍ରିମକୋର୍ଟ ୨୦୧୧ ମସିହାରେ ଏ ଅଭିଯୋଗର ସି.ବି.ଆଇ. ତଦନ୍ତ ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ସଂପୃକ୍ତ ଏନ୍‌ଜିଓ କେବିକେ ଅଞ୍ଚଳରେ ୧୦୦ଟି ଗାଁରେ ଏମ୍‌ଜିଏନ୍‌ଆର୍‌ଇଜିଏ ଯୋଜନାର କାର୍ଯ୍ୟକାରୀତାକୁ ଅନୁଧ୍ୟାନ କରି ରିପୋର୍ଟ କରିଥିଲେ ଯେ, ଓଡ଼ିଶାର ଏ ଯୋଜନାର ଅନ୍ତତଃ ୫୦୦ କୋଟି ଟଙ୍କାର ଦୁର୍ନୀତି ହୋଇଛି, ଯୋଉ ଟଙ୍କା ସରକାରୀ ବାବୁଙ୍କ ପକେଟ୍‌କୁ ଯାଇଛି । ବିଡ଼ମ୍ବନା ଯେ ଏ ଅଭିଯୋଗର ସିବିଆଇ ତଦନ୍ତ ଏପର୍ଯ୍ୟନ୍ତ ସରିନାହିଁ ।

ଦୁର୍ନୀତି ବାଦ୍, ଏମ୍‌ଜିଏନ୍‌ଆର୍‌ଇଜିଏ ଆକ୍ଟରେ ରହିଥିବା ଶହେଦିନର ନିଯୁକ୍ତି ଗ୍ୟାରେଣ୍ଟି ମଧ୍ୟ ଅଳ୍ପ ସଂଖ୍ୟକ ଶ୍ରମିକଙ୍କ ପାଇଁ ଉପଲବ୍ଧ ହୋଇଛି । ସରକାରଙ୍କ ନିଜସ୍ୱ ତଥ୍ୟ(୨) ଅନୁଯାୟୀ ବଲାଙ୍ଗୀର ଜିଲ୍ଲାରେ ଜବ୍ କାର୍ଡ଼ ପାଇଥିବା ୨୭୭,୫୫୦ ପରିବାର ମଧ୍ୟରୁ ୨୦୧୩-୧୪ ଆର୍ଥିକ ବର୍ଷରେ ଜାନୁଆରୀ ମାସ ପର୍ଯ୍ୟନ୍ତ ମାତ୍ର ୫୬୭୫ ପରିବାରଙ୍କୁ ୧୦୦ ଦିନର କାମ ଯୋଗେଇ ଦିଆଯାଇଥିଲା । ଏଇ ସମୟ

ମଧ୍ୟରେ କଳାହାଣ୍ଡି ଜିଲ୍ଲାରେ ଜବ୍‌କାର୍ଡ୍ ପାଇଥିବା ୨,୯୫,୮୩୧ ପରିବାର ମଧ୍ୟରୁ ମାତ୍ର ୨୮୦୧ ପରିବାରଙ୍କୁ ୧୦୦ ଦିନର କାମ ମିଳିଛି । ନିଳାମ୍ବର ଧାଙ୍ଗଡ଼ା ମାଝୀଙ୍କ ଗାଁ ନୂଆଗୁଡ଼ା ଉଛଲା ଗ୍ରାମ ପଞ୍ଚାୟତରେ ଅନ୍ତର୍ଭୁକ୍ତ । ଏ ଗାଁକୁ ପି.ୟୁ.ସି.ଏଲ୍. ଦଳର ଗସ୍ତ ସମୟରେ ପଞ୍ଚାୟତର ପଞ୍ଚାୟତ ସମ୍ପ୍ରସାରଣ ଅଧିକାରୀ ଆମ ଆଗରେ କହିଥିଲେ ଯେ ପଞ୍ଚାୟତର ପ୍ରାୟ ୧୪୦୦ ଜବ୍‌କାର୍ଡ୍‌ଧାରୀ ପରିବାରଙ୍କ ମଧ୍ୟରୁ ଡିସେମ୍ବର' ୧୩ ସୁଦ୍ଧା ମାତ୍ର ତିନିଟି ପରିବାରଙ୍କୁ ୧୦୦ ଦିନର କାମ ମିଳିଛି । ସେ ଆହୁରି ମଧ୍ୟ କହିଥିଲେ ଯେ ଏ ଯୋଜନାରେ କାମ କରୁଥିବା ଶ୍ରମିକମାନଙ୍କୁ ମାସେ ବିଳମ୍ବରେ ମଜୁରି ଦେବାଟା ସାଧାରଣ କଥା ଏବଂ କେବେ କେବେ ତିନିମାସ ବିଳମ୍ବରେ ମଧ୍ୟ ମଜୁରି ଦିଆଯାଏ । ନିକଟରେ କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ଜୟରାମ ରମେଶ ମଧ୍ୟ ଓଡ଼ିଶାରେ ଏମ୍‌ଜିଏନ୍‌ଆର୍‌ଜିଏ ଯୋଜନାରେ ଶ୍ରମିକମାନଙ୍କୁ ବିଳମ୍ବରେ ମଜୁରି ଦେବା ବିଷୟରେ ଉଦ୍‌ବେଗ ପ୍ରକାଶ କରି ଓଡ଼ିଶା ସରକାରଙ୍କୁ ଚିଠି ଲେଖିଥିଲେ । ଶ୍ରୀ ରମେଶ ଲେଖିଥିଲେ ଯେ "ମଜୁରି ବାବଦ ୨୧୬ କୋଟି ଟଙ୍କା, ଯାହାକି ସମୁଦାୟ ମଜୁରି ବାବଦ ଅର୍ଥର ୪୧%, ଶ୍ରମିକମାନଙ୍କୁ ୧୫ ଦିନରୁ ଅଧିକ ବିଳମ୍ବରେ ଦିଆଯାଇଛି, ଏବଂ ୨୯ କୋଟି ଟଙ୍କା ୬୦ ଦିନରୁ ଅଧିକ ବିଳମ୍ବରେ ଦିଆଯାଇଛି" (ଦ ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍, ୧୧ ଜାନୁଆରୀ, ୨୦୧୪) । ଏଭଳି ପରିସ୍ଥିତିରେ, ଏକଥା ବୁଝିବାରେ ଅସୁବିଧା ନାହିଁ ଯେ ବାହାର ରାଜ୍ୟକୁ ଜୀବିକା ଅନ୍ୱେଷଣରେ ଯିବା ଛଡ଼ା ଶ୍ରମିକମାନଙ୍କ ପାଖରେ ଆଉ କୌଣସି ଚାରା ହିଁ ନାହିଁ ।

ଅନ୍ୟରାଜ୍ୟକୁ ବହୁ ସଂଖ୍ୟାରେ ଶ୍ରମିକଙ୍କ ଅଭାବୀ ଗମନ ଜନିତ ଆର୍ଥିକ ଓ ସାମାଜିକ ସମସ୍ୟାଟି – ଯାହା ଦଶନ୍ଧି ଦଶନ୍ଧି ଧରି ଚେର ଧରିଛି ଏବଂ ଦିନକୁ ଦିନ ଉତ୍କଟ ହେବାରେ ଲାଗିଛି – ତାକୁ ବୁଝିବା ପାଇଁ ଅଧିକ ଗବେଷଣା ଓ ବିଶ୍ଳେଷଣର ଆବଶ୍ୟକତା ରହିଛି । ଏ କ୍ଷୁଦ୍ର ତଥା ସୀମିତ ରିପୋର୍ଟରେ ସେଭଳି ଅଧ୍ୟୟନର ଦାବି କରାଯାଉ ନାହିଁ । ତେବେ, ରିପୋର୍ଟରେ ପ୍ରଦତ୍ତ ତଥ୍ୟ ସବୁରୁ ଏତିକି ସ୍ପଷ୍ଟ ଯେ ଚର୍ଚ୍ଚିତ ଦୁଇ ଜିଲ୍ଲାର କୃଷି-ଅର୍ଥନୀତିରେ ରହିଥିବା ବ୍ୟବସ୍ଥାଗତ ବିସମତା ସହିତ ଜିଲ୍ଲାର

ଦାରିଦ୍ର୍ୟ ଯୋଗୁ ବାହାର ରାଜ୍ୟକୁ ଶ୍ରମିକଙ୍କ ସମୁହ ସ୍ଥାନାନ୍ତର ଘଟୁଛି । ଅଥଚ ସରକାରୀ ଆଇନକାନୁନ୍ ବା ଯୋଜନାମାନ ଏ ବିସମତାକୁ ସମ୍ବୋଧିତ କରୁନାହିଁ । ଯେପର୍ଯ୍ୟନ୍ତ ଏ ବିସମତାଗୁଡ଼ିକୁ ସମ୍ବୋଧିତ କରାଯାଇନାହିଁ, ସେ ପର୍ଯ୍ୟନ୍ତ ଶ୍ରମିକ ନିର୍ଯାତନାର ବର୍ବର କାହାଣୀମାନ - ପାପୁଲି କଟା ହେଉ ବା ଅନ୍ୟ କେଉଁ ରୂପରେ ହେଉ - ଆମ ସାମ୍ନାକୁ ଆସୁଥିବ ।

୧. ବାହାର ରାଜ୍ୟକୁ ଯାଉଥିବା ପ୍ରସଂଗରେ କାର୍ଯ୍ୟରତ ଏଡ୍.ଏଟ୍.ଆକ୍ସନ୍ ନାମକ ଏନ୍‌ଜିଓର ରିପୋର୍ଟରେ ଉଲ୍ଲିଖିତ ।

୨. ଭାରତ ସରକାରଙ୍କ ଗ୍ରାମୀଣ ବିକାଶ ମନ୍ତ୍ରାଣାଳୟର ସରକାରୀ ୱେବ ସାଇଟ୍‌ରେ ପ୍ରଦତ୍ତ ତଥ୍ୟ ।

□□

## ଅନ୍ୟାନ୍ୟ ପ୍ରକାଶନ

'ନାଇଁ ଛାଡୁ ଜନମ ମାଟି'

ଲୋୟର ସୁକତେଲ ଜଳସେଚନ ପ୍ରକଳ୍ପ, ବଲାଙ୍ଗୀରକୁ ନେଇ

ଏକ ତଥ୍ୟାନୁସନ୍ଧାନ ରିପୋର୍ଟ

ପ୍ରକାଶକ : ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ, ଓଡ଼ିଶା

ମୂଲ୍ୟ : ୨୦/-

ଓଡ଼ିଶାର ଜନଆନ୍ଦୋଳନ

ପ୍ରକାଶକ : ଜୀବନ ସଂଗ୍ରାମ ସ୍ୱାରସ୍ୱତ ଟ୍ରଷ୍ଟ, ବାଲେଶ୍ୱର

ମୂଲ୍ୟ : ୩୦୦ଟଙ୍କା

ଓଡ଼ିଶାର ଗଣତାନ୍ତ୍ରିକ ଆନ୍ଦୋଳନ-ଚାଷୀ, ଦଳିତ ଓ ନାରୀ

ପ୍ରକାଶକ : ଜୀବନ ସଂଗ୍ରାମ ସାରସ୍ୱତ ଟ୍ରଷ୍ଟ, ବାଲେଶ୍ୱର

ମୂଲ୍ୟ : ୨୫୦ଟଙ୍କା

ଗଣଭିତ୍ତି ପତ୍ରିକା-ସାଙ୍ଗଠନିକ ମୂଲ୍ୟ-୧୦ଟଙ୍କା

ପ୍ରକାଶକ : ଜି.ଏ.ଏସ୍‌ଏସ୍

ଲାଠୋରରେ ଦଳିତ ପ୍ରତିହିଂସା : ଏକ ରିପୋର୍ଟ

ପ୍ରକାଶକ : ଅନ୍ୱେଷା

ମୂଲ୍ୟ : ୨୦/-

ଯେଉଁ ବୁଢ଼ିଆଣୀ
ପୋକ ମାଛିଙ୍କୁ ଧରିବା ପାଇଁ
ମରଣର ଜାଲ ଫାନ୍ଦେ
ସେ ବି ଦିନେ ଛନ୍ଦିଯାଏ
ନିଜ ଜାଲରେ
ନୁହେଁ ଅନ୍ୟ କାହା ଜାଲରେ ।
ସେଇ ଅଦୃଶ୍ୟ ଜାଲରେ ଛନ୍ଦିଯାଇ
ଦିନେ ସେ ନିଜେ ପାଲଟିଯାଏ
ଗୋଟିଏ ଅସହାୟ
ମୃତ ମାଛି ।

- କବି ବ୍ରଜନାଥ ରଥ (୧୯୩୮-୨୦୧୪)
ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନର ପୂର୍ବତନ ଉପ ସଭାପତି

'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ' ଓଡ଼ିଶା ମଧ୍ୟରେ ସକ୍ରିୟ ଥିବା ଏକ ମାନବିକ ଓ ଗଣତାନ୍ତ୍ରିକ ଅଧିକାର ସଂଗଠନ । ୧୯୮୪ରେ ଗଠିତ ସଂଗଠନ କୌଣସି ଆର୍ଥିକ ଅନୁଦାନ ନ ନେଇ ରାଜ୍ୟରେ ମାନବିକ ଓ ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ପାଇଁ କାମ କରିଆସୁଛି । ରାଷ୍ଟ୍ରହିଂସା, ବିସ୍ଥାପନ, ଜାତିଗତ ହିଂସା, ସାମ୍ପ୍ରଦାୟିକତା ଓ ଅବା ମାନବିକ ଅଧିକାର ଉଲ୍ଲଘଂନର ପ୍ରତିବାଦରେ ସଂଗଠନ କାମ୍ କରୁଛି । ଏହାର ବିଭିନ୍ନ ଜିଲ୍ଲାରେ ଜିଲ୍ଲା ସଂଗଠନ ରହିଛି ଯେଉଁମାନେ କି ମାନବିକ ଓ ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ପାଇଁ କାର୍ଯ୍ୟରତ ।

ବ୍ରଜେନ୍ଦ୍ର ମହାନ୍ତି
ଯୋଗାଯୋଗ : ପ୍ଲଟନଂ ୯୩(ପି), ଆଚାର୍ଯ୍ୟବିହାର, ଭୁବନେଶ୍ୱର-୧୩
ମୋ : ୯୪୩୮୧୩୨୯୫୫